SHESA ANKA PRATHAMA DRUSYA
A Novel
by Kishoree Charan Das
Published by Vidyapuri, Cuttack 753002

ISBN 81-7411-433-5

ପ୍ରଥମ ପ୍ରକାଶ
ଫେବୃୟାରୀ ୨୦୦୩

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ପ୍ରଚ୍ଛଦ
ରଣଜିତ୍ ପରିଡ଼ା

ମୁଦ୍ରଣ
ରୟାଲ୍‌ହାଫ୍‌ଟୋନ୍ କୋ, କଟକ

ମୂଲ୍ୟ ଟ ୬୦.୦୦

ତରୁଣ ସାହିତ୍ୟିକ ବନ୍ଧୁ ଡକ୍ଟର ବିଜୟାନନ୍ଦ ସିଂହଙ୍କୁ

ଗଭୀର ସ୍ନେହ ଓ ଶ୍ରଦ୍ଧାର ସହିତ -

କିଶୋରୀଚରଣ

# ପୂର୍ବାଭାସ

ପ୍ରଥମେ କିଛି କହିବାକୁ ହେବ ଏଇ ଲେଖାର ନାମକରଣ ଉପରେ । ପ୍ରଶ୍ନ ଉଠୁଛି - କାହିଁକି 'ଶେଷ' ଅଙ୍କ ? ତା'ର ସହଜ ଉତ୍ତର ହେଉଛି ଯେ ଉଣାଅଧିକେ ସେମାନେ ସମସ୍ତେ ବୁଢ଼ାବୁଢ଼ୀ । ଦୃଶ୍ୟର ରଚୟିତା ତଥା ଦର୍ଶକ କେତେଜଣ । ନାନାଦି ଦୃଶ୍ୟ-ବିଶିଷ୍ଟ ଏକାଧିକ ଅଙ୍କ ଅଭିନୀତ ହୋଇ ସାରିଲାଣି ତାଙ୍କ ଜୀବନର ରଙ୍ଗମଞ୍ଚରେ । ତେଣୁ ମୋର କହିବା କଥା ଯେ ଏଇ ବୋଧହୁଏ ଥିଲା ତା'ର ଶେଷ ଅଙ୍କ, ଯେଉଁ ଯେଉଁ ଜୀବନକୁ ନିରୂପିତ କରିବା ଲାଗି । ଅନ୍ତତଃ ତାଙ୍କ ଆତ୍ମସନ୍ତୋଷ ଦୃଷ୍ଟିରୁ । ହଁ, ଆଉ କେତୋଟି ଦୃଶ୍ୟର ଆବିର୍ଭାବ ହୋଇପାରେ ହୁଏତ, ତାଙ୍କ ଅବଶିଷ୍ଟ ଜୀବନରେ ଏବଂ ତାଙ୍କୁ ଟାଣି ନେଇପାରେ ସେହି ନିରୂପଣର ଶୀର୍ଷ ସ୍ତରକୁ, ତା'କୁ କ୍ଲାଇମାକ୍ସ କୁହ କି ଆଣ୍ଟିକ୍ଲାଇମାକ୍ସ । କିନ୍ତୁ କ୍ଷମା କରିବେ, ଏକାବେଳକେ ଭିନ୍ନ ଘଟଣା ଏବଂ ଅନୁଭୂତି ନେଇ ଏକ ନୂଆ ଅଙ୍କ ରଚିତ ହୋଇପାରେ ତାଙ୍କ-ଜୀବନରେ, ଏଭଳି ଆଶା କରି ହେଉ ନାହିଁ ।

ଦୃଶ୍ୟଟି ରଚିତ ହୋଇଥିଲା 'ପ୍ରଦୋଷ ବିଳାସ' ନାମକ ଏକ ବିଶିଷ୍ଟ ହୋଟେଲ୍‌ର ଉପର ମହଲାରେ ଥିବା ୧୦୪ ନମ୍ବର ରୁମ୍‌ରେ । ବସ୍ତୁତଃ ଏହାକୁ ଏକ ଜରାନିବାସ ବୋଲି କୁହାଯାଇପାରେ, କାରଣ ତମକୁ ପଅଁଷଠି ବର୍ଷ ନ ହୋଇଥିଲେ ତମେ ତା'ର ଅନ୍ତେବାସୀ ହୋଇପାରିବ ନାହିଁ ।

ଦୃଶ୍ୟର ରଚୟିତା - ଜଗଦ୍‌କୃଷ୍ଣ ପଣ୍ଡା, ବୟସ ବୟାଅଶୀ; ଏବଂ ମଞ୍ଜୁ ମହାପାତ୍ର, ବୟସ ସତୁରି ।

ଦର୍ଶକବୃନ୍ଦ - ଡଃ ସେନ୍, ବୟସ ଅଠସ୍ତରି; ବଳରାମ ନାଏକ, ବୟସ ଚଉସ୍ତରି; ଏବଂ ଗଜେନ୍ଦ୍ର ଦାସ, ବୟସ ଅଣସ୍ତରି ।

ହେ ଭଗବାନ୍ ! ଏକେ ସମସ୍ତେ ବୁଢ଼ାବୁଢ଼ୀ, ପୁଣି ଏଇଆକୁ 'ଦୃଶ୍ୟ' କହିବ, ମଞ୍ଚ ଏବଂ ପ୍ରେକ୍ଷାଗୃହରେ ଥିବା ମାତ୍ର ପାଞ୍ଚଜଣଙ୍କୁ ନେଇ ! ଏହି ମର୍ମରେ ଆପଣ ବୋଧହୁଏ ହତାଶ ହୋଇ ଉଠିବେଣି, କାହାଣୀଟି ଭଲା କ'ଣ ହୋଇଥିବ ବୋଲି ଭାବି । ହେଲେ ମୁଁ ଆପଣଙ୍କୁ ବୋଧ ଦେବାକୁ ଚାହେଁ ଯେ ତାହା ତଥାପି ଆପଣଙ୍କ ମନୋବୁଦ୍ଧିକୁ ସ୍ପର୍ଶ କରିବ, ତହୁଁ ଆମୋଦିତ, ମଧ ଆଲୋଡ଼ିତ କରିବ  ବୋଲି ମୋର ବିଶ୍ୱାସ । ଯେହେତୁ ସେମାନେ ସମସ୍ତେ ତାଙ୍କ ପିଲାବେଳ୍‌ରୁ ବଢ଼ି ବଢ଼ି ଆସିଛନ୍ତି ଏ ଯାଏଁ, ଅନେକ କୃତିତ୍ୱ ହାସଲ କରିବାର

ତଥା ବିଶିଷ୍ଟ ସୁଖର ଅଧିକାରୀ ହେବାର ସ୍ୱପ୍ନକୁ ପ୍ରଶ୍ରୟ ଦେଇ । ମୁଁ କହିବି ସେସବୁ କଥା । ଯଦିଓ ଚରିତ୍ର ଭେଦରେ କାହା ବିଷୟରେ ବେଶି କିଛି କହିବାକୁ ପଡ଼ିବ ଏବଂ କାହା ବିଷୟରେ ଅଳ୍ପ । ନା, ସେମାନେ କେହି ଇତରସାଧାରଣ ନୁହନ୍ତି । ପ୍ରତ୍ୟେକର ଏକ ନିଜସ୍ୱ ଏବଂ ସ୍ୱତନ୍ତ୍ର ବ୍ୟକ୍ତିଗୁଣ ଅଛି । କାହାର ବ୍ୟକ୍ତିତ୍ୱ କେତେଦୂର ବଳିଷ୍ଠ ଅବା ସୁସ୍ଥ ବୋଲି ମନେହେବ ଆପଣଙ୍କର, ସେକଥା ଭିନ୍ନ । ତେଣୁ ଆଜି ତାଙ୍କ ବୁଢ଼ାବୟସରେ ଯାହା କିଛି ମିଳିଲା ବା ନ ମିଳିଲା ତାକୁ ନେଇ ତାଙ୍କୁ ଭଲ ନ ପାଇପାରିଲେ ନାହିଁ, ତାଙ୍କୁ ଆପଣ ସମ୍ମାନ (ହୁଏତ ଦୟାମିଶା ସମ୍ମାନ) ଦେବେ, ଏ ବିଷୟରେ ମୁଁ ନିଃସନ୍ଦେହ ।

ହଁ, ଯାହା ଦୃଶ୍ୟମାନ ହେଲା, ତା' ହେଉଛି ଏଇ : ୧୦୪ ନମ୍ବର ରୁମ୍‌ରେ ଥିବା ଅତିଥି ଜଗତ୍‌କୃଷ୍ଣ ପଣ୍ଡା ମଞ୍ଜୁ ମହାପାତ୍ରଙ୍କ ଗୋଟିଏ ହାତ ପାପୁଲିକୁ ତାଙ୍କ ହାତରେ ରଖି ଆଉଁଶୁଛନ୍ତି । ପାପୁଲିରୁ କହୁଣି ଯାଏଁ ଏବଂ ସେଥିରେ ମଗ୍ନ ହେଲାପରି ଦିଶୁଛନ୍ତି । ଆଉ ମଞ୍ଜୁଙ୍କ ମୁହଁରେ ଯେଉଁଭଳି ଆନନ୍ଦ ଫୁଟିଉଠୁଛି, ତାକୁ ଉଜ୍ଜ୍ୱଳନ ଛଡ଼ା ଆଉ କିଛି କୁହାଯାଇ ନ ପାରେ । ହେଲେ ବିପତ୍ନୀକ ଜଗତ୍‌କୃଷ୍ଣଙ୍କର ଏଇ ପ୍ରକ୍ରିୟାଟି କ'ଣ ବୋଲି ବୁଝିହେଉ ନାହିଁ । ମନେହୁଏ ସେ ମଞ୍ଜୁଙ୍କୁ ପ୍ରେମ କରୁଛନ୍ତି, ଦେଶକାଳପାତ୍ରକୁ ପରୁଆ ନ କରି । ସ୍ତ୍ରୀଲୋକଜଣକ 'ପ୍ରଦୋଷ ବିଳାସ'ର ଅନ୍ତେବାସୀ ନୁହନ୍ତି । ତା'ହେଲେ ସେ କିଏ ? ଏବଂ କଥାଟା ପ୍ରକୃତରେ କ'ଣ ? ସମୟ, ମଧ୍ୟାହ୍ନ ।

ମୋ କଥାଟି ଉପଭୋଗ୍ୟ ହେବ, ଅନ୍ତତଃ ବୌଦ୍ଧିକ ସ୍ତରରେ, ଆପଣଙ୍କୁ ଯତ୍‌ସାମାନ୍ୟ କୁତୁକୁତୁ କରିବା ଛଡ଼ା, ଏଇ ଆଶାରେ ମୁଁ ବର୍ତ୍ତମାନ ଘୋଷଣା କରୁଛି ମୋର 'ଶେଷ ଅଙ୍କ, ପ୍ରଥମ ଦୃଶ୍ୟ' ଏବଂ ପରଦା ଉଠେଇବାର ସାହସ କରୁଛି । ଜୟ ହିନ୍ଦ୍ ।

ଖଟବିନ୍ ସାହି, କଟକ
ତା ୫.୨.୨୦୦୩

**ଲେଖକ**

# ସୂଚୀପତ୍ର

# ପ୍ରଥମ ଦର୍ଶକ : ଡଃ ସେନ୍

ଡଃ ସେନ୍ ହେଉଛନ୍ତି ଦୃଶ୍ୟର ସର୍ବପ୍ରଥମ ଦର୍ଶକ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କାରଣ ଦୃଶ୍ୟର ସୂତ୍ରପାତ ହୋଇଥିଲା, ଠିକ୍ ଡାଇନିଂଗ୍ ହଲ୍‌ର ବେଲ୍ ଯେତେବେଳେ ବାଜିଉଠିଲା ଲଞ୍ଚର ଡାକରା ଦେଇ ଏବଂ ଡଃ ସେନ୍ ମୁହୂର୍ତ୍ତେ ଡେରି କରନ୍ତି ନାହିଁ, ବେଲ୍‌ର ଆହ୍ୱାନ ଶୁଣିଲା ପରେ । ଥ୍ୟାଂକ୍ ୟୁ, ମୁଁ ଆସୁଛି ବୋଲି କହିଲା ପରି ।

ସମୟାନୁବର୍ତ୍ତିତା । ଅବସରପ୍ରାପ୍ତ ବଡ଼ସାହେବ ଡଃ ସେନ୍‌ଙ୍କର ନାନାଦି ଭଲଗୁଣ ଭିତରେ ଇଏ ମଧ୍ୟ ଗୋଟିଏ ବୋଲି କହିଲେ ଯଥେଷ୍ଟ ନୁହେଁ । ସେ ତା'କୁ ଯେଉଁଭଳି ଗୁରୁତ୍ୱ ଦେଇ ଆସିଛନ୍ତି ତାଙ୍କ ଜୀବନରେ, ତାହା ଏକ ସାମ୍ବିଧାନିକ ଅବା ଶାସ୍ତ୍ରୀୟ ଅନୁଶାସନ ବୋଲି ମନେହେବ । ସେ ଦିଗରେ ସେ ନିଜ ପ୍ରତି କଠୋର ହେବା ଛଡ଼ା ଆଉ କାହା ପ୍ରତି ମଧ୍ୟ ଉଦାର ହେବାକୁ ଚାହାନ୍ତି ନାହିଁ । ଯଥା, କେଉଁ ଦର୍ଶନାଭିଳାଷୀ ଯଦି ନିର୍ଦ୍ଧାରିତ ସମୟରେ ଆସି ନ ପହୁଞ୍ଚେ ତାଙ୍କ ପାଖରେ, ତା'କୁ ଏଇ ପ୍ରଶ୍ନ ପ୍ରଥମେ ଶୁଣିବାକୁ ପଡ଼େ - ଏଇକ୍ଷଣି କେତେ ବାଜିଛି ଆପଣଙ୍କ ଘଣ୍ଟାରେ ?

ଖାଲି ଏଇ ଗୁଣଟି କାହିଁକି, ଡଃ ସେନ୍‌ଙ୍କର ରୂପଗୁଣରେ ଏମିତି କେତେ ଭିନ୍ନଭାବ ଦିଶିଯାଉଥିଲା ତାଙ୍କର ରାଜସେବା ଓରଫ୍ ହାକିମି ଜୀବନରେ, ଯେଉଁଥିରେ ନ ଜାଣିବା ଲୋକର ଭ୍ରମ ହୁଏ ଯେ ଇଏ ଜଣେ ବିଦେଶୀ ହୋଇଥିବେ ପରା । ପ୍ରଥମେ ଦେଖ ତାଙ୍କ ଚେହେରାକୁ । ଲମ୍ବାଚଉଡ଼ା ଗଢ଼ଣ, ଉଞ୍ଚ କପାଳ, ଠିଆ ନାକ ଏବଂ ତକ୍ ତକ୍ ଗୋରା ରଙ୍ଗ । ଥରେ ତାଙ୍କ ଅଫିସ୍‌ରେ କାମ କରୁଥିବା ଜଣେ କର୍ମଚାରୀ ଗୋଟାଏ ମନ୍ତବ୍ୟ ଝାଡ଼ି ଦେଇଥିଲା ତାଙ୍କ ଚେହେରାକୁ ନେଇ । କହିଲା - "ସତରେ ଗୋଟାଏ କାଶ୍ମୀରୀ ପଣ୍ଡିତର ଚେହେରା ପାଇଛନ୍ତି ଆମ ସାର୍ !" ସେଇଠୁଁ ତା'ର ସହକର୍ମୀ କହିଲା, ତାକୁ ଥଟ୍ଟା କଲାପରି - "ଆଚ୍ଛା ? କ'ଣ କୋଉ କାଶ୍ମୀରୀ ପଣ୍ଡିତ ପଳେଇ ଆସିଲେ ବଙ୍ଗ ଦେଶକୁ ଏବଂ ନେହେରୁ, ପଣ୍ଡିତ୍ କିମ୍ବା ସେମିତି କିଛି ସାଙ୍ଗିଆ ଛାଡ଼ି ଦେଇ ସେନ୍‌ମହାଶୟ ବୋଲାଇଲେ, କିନ୍ତୁ ତାଙ୍କର କେଉଁ ବଂଶଧର ଉତ୍କଳଭୂମିକୁ ଆସିବାପାଇଁ ମନ ବଳେଇଲେ, ଏଇଠି ଯଥାବିଧି ରାଜତ୍ୱ କରିବା ଲାଗି ? ଆଉ ଇଏ ହେଉଛନ୍ତି ତାଙ୍କର ଦାୟାଦ ।" ଏବଂ ଏହି ଭାବରେ ଏକ ରସବୋଧର ସୃଷ୍ଟି ହେଲା କିରାଣି ମହଲରେ, ତାଙ୍କ ଲଞ୍ଚକାଳୀନ ଉପଭୋଗ ପାଇଁ ।

କିନ୍ତୁ ଡଃ ସେନ୍‌ଙ୍କ ବାପା ନରୋତ୍ତମ ସେନ୍ ଯଦି ଥାଆନ୍ତେ ସେଠି, ସେ ବୋଧହୁଏ ଏଇ ରସବୋଧ ପ୍ରତି ମୃଦୁ ଜବାବଟିଏ ଛାଡ଼ି ଦେଇ ପାରିଥାନ୍ତେ । କହି ଥାଆନ୍ତେ - "ୱେଲ୍, ଆମେ କାଶ୍ମୀରୀ ପଣ୍ଡିତ ନ ହେଲେ ନାହିଁ, ଆମ ପୂର୍ବପୁରୁଷ ସେନ୍ ରାଜବଂଶର ଲୋକ, ଏକଥା ଜାଣନ୍ତି ନାହିଁ ଆପଣ ?" ତାଙ୍କ ମୁରୁକିହସାରୁ ଜାଣି ହେବ ନାହିଁ ସେ ତା'କୁ ଗୋଟିଏ ମଉଜିଆ ଶୁଣାକଥା ହିସାବରେ କହିଲେ ନା ସେଥିରେ କିଛି ଇତିହାସର ତଥ୍ୟ ରହିଛି । ହେଲେ ଉଲ୍ଲେଖଯୋଗ୍ୟ ଯେ ସେ ତାଙ୍କ ପୁଅ ଆଗରେ ମଧ୍ୟ କହିଛନ୍ତି ଏଇକଥା କେତେଥର, ତା' ପିଲାବେଳେ । ତାଙ୍କ ମନ୍ଦହାସକୁ ଅକ୍ଷୁଣ୍ଣ ରଖି । ଥରେ ମଧ୍ୟ ଗୋଟାଏ ଦଲିଲ୍‌ଜାତୀୟ କାଗଜ ଆଣି ବଢ଼େଇ ଦେଇଛନ୍ତି ପୁଅ ହାତକୁ, ତା'ର ବିସ୍ଫାରିତ ଆଖିର ଚାହାଣିକୁ ସମ୍ମାନ ଦେଲାପରି । ଏବଂ କହିଛନ୍ତି - "ସତ କି ମିଛ ଜାଣେ ନାହିଁ । କିନ୍ତୁ ବାବାଙ୍କୁ ତାଙ୍କର ଜଣେ ଷ୍ଟୁଡେଣ୍ଟ୍ (ଡଃ ସେନ୍‌ଙ୍କ ଜେଜେବାପା ସ୍କୁଲ୍‌ମାଷ୍ଟର ଥିଲେ) ଏଇ ବଂଶାବଳୀ ତିଆରି କରି ଦେଇଥିଲା ଏବଂ ସେ ତାକୁ ଦେଇଯାଇଛନ୍ତି ମୋତେ । ଆଉ କହିଛନ୍ତି ଯତ୍ନରେ ରଖିଥିବୁ ।"

କହିବା ବାହୁଲ୍ୟ ଯେ ଏଇ କାଗଜଖଣ୍ଡକ ଯଥାକ୍ରମେ ଆସି ପହଞ୍ଚି ଯାଇଛି ଡଃ ସେନ୍‌ଙ୍କ ହାତବାକ୍ସରେ ଏବଂ ସେ ତାକୁ ଯତ୍ନରେ ରଖିଛନ୍ତି, ବାବାଙ୍କର ଗୋଟିଏ ସ୍ମୃତିଚିହ୍ନ ଜାତୀୟ ସମ୍ପତ୍ତି ହିସାବରେ । କିନ୍ତୁ ବୁଦ୍ଧିବାଦୀ ପୁଅ ସେଥିପ୍ରତି କୌଣସି ଗୁରୁତ୍ୱ ଦେଇ ନାହାନ୍ତି । ରହସ୍ୟରେ ହେଉ ବା ସତସତିକା ।

ବିଶେଷ ବୁଦ୍ଧିର ପ୍ରୟୋଜନ ମଧ୍ୟ ହୋଇ ନାହିଁ ସେଇ 'ସମ୍ପତ୍ତି'କୁ ତୁଚ୍ଛ ମଣିବାରେ, ସିଏ ସତ ହେଉ ବା ମିଛ । କାରଣ ବଡ଼ ନ ହେଉଣୁ ତାଙ୍କୁ ଜଳଜଳ ହୋଇ ଦିଶିଯାଇଛି ଯେ ଚେହେରାରେ ସେ ତାଙ୍କ ଗୋରୀ, ବଡ଼ ଆଖି, ଲମ୍ବାନାକ ତଥା ଟାଣୁଆ ଚିବୁକ ବିଶିଷ୍ଟ ମାଆଙ୍କ ପୁଅ ଏବଂ ଏଇ 'ରାଜବଂଶୀୟ' ଚେହେରା ପାଇଥିବା ମାଆଙ୍କ ନାଆଁ ଥିଲା ସୁରଭି ଦତ୍ତ, ତାଙ୍କ ବାହାଘର ପୂର୍ବରୁ । ଡାକ୍ତର ଦେବେନ୍ ଦତ୍ତଙ୍କ ଝିଅ । ମଧ୍ୟ କେଉଁ ସେନ୍‌ରାଜାଙ୍କର ରକ୍ତ ନ ଥିଲା ତାଙ୍କ ଦେହରେ, ଉପରୋକ୍ତ ବଂଶାବଳୀ ଅନୁଯାୟୀ । ପୂର୍ଣ୍ଣଚ୍ଛେଦ ।

ହଁ, ଡକ୍ଟର ସେନ୍‌ଙ୍କର ରୂପଗୁଣରେ ଯେଉଁ ଭିନ୍ନ ଦେଶୀୟ ଉତ୍କର୍ଷ (ସତେ ବିଦେଶୀପଣ) ସୁଦୃଶ୍ୟ ହୋଇ ଉଠିଥିଲା ସେ ବଡ଼ ହେଲା ବେଳକୁ, ସେ ବିଷୟରେ ସେ ସମ୍ପୂର୍ଣ୍ଣ ସଚେତନ ଥିଲେ । କିନ୍ତୁ ତାହା ତାଙ୍କ ନିଜଗଢ଼ା ନିଜତ୍ୱ ଛଡ଼ା ଆଉ କିଛି ହୋଇଥିବ ପରା ବୋଲି ସେ ଆଦୌ ଭାବିବାକୁ ଚାହୁଁ ନ ଥିଲେ ।

ଅପରନ୍ତୁ ତାଙ୍କ ମନରେ ଆସି ଯାଇଥିଲା ଏକ 'ଉଚିତ' ଆତ୍ମବଡ଼ିମା । ଯାହାର ପରିଭାଷା ଏହିପ୍ରକାର : ମୁଁ ମୋ ସ୍ୱଗୁଣରେ ପାହାଚ ଚଢ଼ି ଚଢ଼ି ଆସି ପହଞ୍ଚିଛି ଏଠି । ଫାଷ୍ଟକ୍ଲାସ୍ ଷ୍ଟୁଡ଼େଣ୍ଟ ଥିଲି ମୂଳରୁ ଶେଷଯାଏଁ । ସେଇଠୁଁ ଅଲ୍‌ଇଣ୍ଡିଆ କମ୍ପିଟିସନ୍‌ରେ ଯଥେଷ୍ଟ

ଉଞ୍ଚ ମାର୍କ ରଖି ନମ୍ବର ୱାନ୍ କ୍ଲାସ୍ ୱାନ୍ ସର୍ଭିସ । ଏବଂ ସେଥିରେ ଯେଉଁ ସୁନାମ ଅର୍ଜିଛି, ଅଦ୍ଭବହୁତ ଆଉଟ୍-ଅଫ୍-ଟର୍ଣ୍ଣ ପ୍ରମୋସନ୍ ସମେତ, ତାକୁ ସାମାନ୍ୟ ବୋଲି କହିହେବ ନାହିଁ । କିନ୍ତୁ ମନେରଖ, ଏ ସବୁଥିରେ ଅଛି କେବଳ ମୋ ନିଜର କୃତିତ୍ୱ । କୁହାବୋଲା କି ଧରାଧରିର କାଣିଚାଏ ନାହିଁ । ବିଚରା 'ରାଜବଂଶୀୟ' ବାବାଙ୍କୁ କୋଉ ଅର୍ଡ଼ିନାରୀ ଲୋକ ଆଗରେ ମୁହଁ ହରେଇବାକୁ ପଡ଼ି ନାହିଁ କିମ୍ବା ମୋ ରାଣୀମାଆର ମୁଣ୍ଡ ତଳକୁ ହୋଇ ନାହିଁ ତା' ରାଜକୁମାର ପାଇଁ ।

ସୁନ୍ଦରୀ ମାଆ ଚାଲିଗଲାଣି କେବେଠୁଁ । ହେଲେ ବାବା ଏଇକ୍ଷଣି ଅଛନ୍ତି ମୋ ପାଖରେ । ଏବଂ ମୋର ଯେଉଁ ସୁନାମ ପହଞ୍ଚୁଥିବ ତାଙ୍କ କାନ୍‌ରେ ସେଥିରେ ତାଙ୍କ ଆୟୁଷ କ'ଣ ବଢ଼ିଯାଉ ନ ଥିବ ଅଦ୍ଭବହୁତ ? ଏହିପ୍ରକାର ଭାବ ମଧ୍ୟ ଛୁଉଁଥିଲା ଡଃ ବିକ୍ରମ ସେନ୍ ଆଇ.ଏ.ଏସ୍.ଙ୍କୁ ସେ ଯେତେବେଳେ କ୍ୟାପିଟାଲ୍‌ରେ ଥିଲେ ଗୋଟିଏ ବିଶିଷ୍ଟ ପଦବୀରେ ଏକ ଅତିବିଶିଷ୍ଟ ଦାୟିତ୍ୱ ନେଇ । ଚଉରାଳିଶ ବର୍ଷ ବୟସରେ । ଏବଂ ଡ୍ରେସିଂଗ୍ ଟେବୁଲ୍‌ର ଆଇନାରେ ନିଜ ଚେହେରାକୁ ଦେଖି ମୁଣ୍ଡ ସାଉଁଳିଲା ବେଳେ ଖୁସିଟାଏ ନ ହୋଇ ରହିପାରୁ ନ ଥିଲେ । ସ୍ୱଗୁଣର ଉତ୍କର୍ଷ ସାଙ୍ଗକୁ ଏଭଳି ଗୋଟିଏ ତରୁଣସୁଲଭ ଦର୍ଶନୀୟ ଚେହେରାକୁ ଅମଳିନ ରଖି ପାରିଛନ୍ତି ବୋଲି । ସେଇଠୁଁ ହାତଘଡ଼ି ଦେଖି ତରତର ହେଉଥିଲେ, ତାଙ୍କ ସକାଳର ନିତ୍ୟକର୍ମ ସାରି ଯଥା ସମୟରେ, ଅର୍ଥାତ୍ ଦିନ ଦଶଟାର ଠିକ୍ ପାଞ୍ଚ ମିନିଟ୍ ପୂର୍ବରୁ ତାଙ୍କ ଅଫିସ୍ ଡେସ୍କ ପାଖରେ ପହୁଞ୍ଚିବେ ବୋଲି । ଏଇ କାମ ଯେତେ ଗୁରୁତ୍ୱପୂର୍ଣ୍ଣ ହେଉ ପଛେ ସେଥିରେ ଏତେ ତରତର ହେବାର କାରଣ ନ ଥିଲା । ହେଲେ କାରଣ ଠାରୁ ବଡ଼ ଡିସିପ୍ଲିନ୍, ଅନୁଶାସନ । ସ୍ପେଶାଲ୍ ରିଫର୍ମ୍‌ସ କମିଶନର୍ ଡଃ ସେନ୍ ତାଙ୍କ ଡେସ୍କ ପାଖରେ ପହୁଞ୍ଚିବା ଦରକାର ଯଥାସମୟରେ । ସମୟାନୁବର୍ତ୍ତିତାର ଗୋଟାଏ ଦୃଷ୍ଟାନ୍ତ ଦେଖାଇଲା ପରି ଅନ୍ୟମାନଙ୍କ ପାଇଁ । ଏବଂ ଯେମିତି ହେଲେ ସେ ପହୁଞ୍ଚନ୍ତି ସେଠି ଦିନ ଦଶଟା ନ ହେଉଣୁ । ଯଦିଓ ସେଥିପାଇଁ ତାଙ୍କୁ ବେଳେବେଳେ ତାଙ୍କ ବ୍ରେକ୍‌ଫାଷ୍ଟର ଅମର୍ଯ୍ୟାଦା କରିବାକୁ ପଡ଼େ । ଆଗେ ବ୍ରେକ୍‌ଫାଷ୍ଟ, ନା ଆଗେ ତାଙ୍କ ପ୍ରଶାସନିକ ଅନନ୍ୟସୁନ୍ଦର ଇମେଜ୍ ?

ବେଶ୍ । କିନ୍ତୁ ଏଇ ଯେଉଁ ଅମର୍ଯ୍ୟାଦା ତାଙ୍କୁ କରିବାକୁ ପଡ଼େ, ବେଳେ ବେଳେ ତାଙ୍କ ଇମେଜ୍‌ର ସୁରକ୍ଷା ପାଇଁ, ତାକୁ କ'ଣ ସେ ଅନାୟାସରେ କରିପାରନ୍ତି ? ଘରେ କେହି ନ ଥାଆନ୍ତି ତାଙ୍କ ସ୍ୱାସ୍ଥ୍ୟର ଯତ୍ନ ନେବାପାଇଁ ? ଯାହାଙ୍କ କଥାକୁ ଟାଳି ଦେଇ ହେବ ନାହିଁ କି 'ନାଇଁ ଥାଉ' ବୋଲି କହି ତାଙ୍କ ହାତକୁ ଛିଞ୍ଚାଡ଼ି ଦେଇ ହେବ ନାହିଁ ?

ନା । କେହି ନ ଥିଲେ ସେମିତି । ମାଆ ତ ଗଲେଣି । ଏବଂ ବାବା ସ୍ୱଭାବତଃ କେବଳ ସାମାଜିକ-ରାଜନୈତିକ ଚର୍ଚ୍ଚା କରନ୍ତି ବେଳେ ବେଳେ, ତାଙ୍କ ବିଦ୍ୱାନ ପୁଅ ସାଙ୍ଗରେ । ଏସବୁ ସାମାନ୍ୟ କଥାରେ ନ ଥାଆନ୍ତି । ଏବଂ ଡଃ ସେନ୍ ଆଜିଯାଏଁ ମଧ୍ୟ ବାହା ହୋଇ ନାହାନ୍ତି ।

ଆଶ୍ଚର୍ଯ୍ୟ ! ଆସି ଦରବୁଢ଼ା ହେଲେଣି, ତଥାପି ବାହା ହୋଇ ନାହାନ୍ତି ? କ୍ୱଚିତ୍ କେହି ତାଙ୍କୁ ପ୍ରଶ୍ନ କରନ୍ତି ନାହିଁ ଏ ବିଷୟରେ । କେବଳ ମାଆଙ୍କର ସାହସ ଥିଲା ଏଇ ପ୍ରଶ୍ନ ପଚାରିବା ପାଇଁ, ଏବଂ ବାରମ୍ବାର, ଯଦିଓ ଉତ୍ତରରେ ମୃଦୁହାସବିଶିଷ୍ଟ ମୁଣ୍ଡହଲା ଛଡ଼ା ଆଉ କିଛି ଉତ୍ତର ମିଳୁ ନ ଥିଲା ତାଙ୍କୁ । ଥରୁଟିଏ କେବଳ ସେ କହିଥିଲେ ମାଆଙ୍କୁ ପରିହାସ ଛଳରେ, - ''ଠିକ୍ ତୋରି ପରି ଗୋଟିଏ ସୁନ୍ଦରୀ ଆଉ ଗୁଣବତୀ ସ୍ତ୍ରୀଟିଏ ଯୋଗାଡ଼ କରି ଦେଉ ମୋ ପାଇଁ, ତା' ହେଲେ ମୁଁ ତାକୁ ବାହା ହେବି । ହେଲା ?'' ହେଲେ ସେଇ ଆଶା-ଆଶଙ୍କା ଦୂରୀଭୂତ ହୋଇଗଲାଣି କେବେଠୁଁ । ଏବଂ ସେଥିପାଇଁ ମୋ ମାଆ ଦାୟୀ, ମୁଁ ନୁହେଁ ବୋଲି ସେ ସଫେଇ ଦିଅନ୍ତି ନିଜକୁ । ଆଉ ବାବା ? ନା, ଓକିଲାତି ବୃତ୍ତିରେ ବିଶେଷ ସଫଳ ହୋଇପାରି ନ ଥିବା ନରୋତ୍ତମ ସେନ୍ ତାଙ୍କ ପୁଅକୁ କିଛି କୁହନ୍ତି ନାହିଁ ଏସବୁ ବିଷୟରେ । ତା'ର ବ୍ୟକ୍ତିଗତ ବ୍ୟାପାରରେ ହସ୍ତକ୍ଷେପ କରିବାକୁ ଚାହାନ୍ତି ନାହିଁ । ଯଦିଓ ବିକ୍ରମ ବାପମାଆଙ୍କର ଏକମାତ୍ର ସନ୍ତାନ ଏବଂ ବୋହୂଟିଏ ଘରକୁ ଆସିଥିଲେ ସେ ନିଶ୍ଚୟ ଖୁସି ହୋଇଥାଆନ୍ତେ ବୋଲି ଭାବିବା କଥା ।

ହେଲେ ବାହାର ଦୁନିଆଁର ଠିକଣା ପ୍ରଶ୍ନ, କୌତୂହଳ ନୁହେଁ, ଜିଜ୍ଞାସା ପ୍ରତି ଗୋଟାଏ ଧାଡ଼ିକିଆ ଉତ୍ତର ସବୁବେଳେ ମହଜୁଦ୍ ଥିଲା ତାଙ୍କ ପାଖରେ - ମୁଁ ଆଉ ଜଣକୁ ଡାକି ଆଣିବାକୁ ଚାହିଁଲି ନାହିଁ, ମୋ ନିଜତ୍ୱ ଉପରେ ସବାର ହେବାପାଇଁ । ନୋ, ଥ୍ୟାଙ୍କ୍ସ ।

ପତ୍ନୀଟିଏ ତମ ନିଜତ୍ୱର ହାନିକାରକ, ଏଭଳି ଧାରଣା କେବେଠୁଁ ଏବଂ କେମିତି ଆସିଲା ତାଙ୍କ ମନରେ, କହିହେବ ନାହିଁ । ତେବେ ତାଙ୍କର ପିଲାଦିନେ ହିଁ ସେଥିର ମୂଳଦୁଆ ପଡ଼ିଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । ଯେତେବେଳେ ତାଙ୍କ ମନକୁ ଆସୁଥିଲା ଯେ ସୁନ୍ଦରୀ ସ୍ୱଳ୍ପଭାଷିଣୀ ମାଆ ହେଉଛନ୍ତି ଏଇ ଘରର ମାଲିକ,କଥାକୁହା 'ରାଜନୀତି ବିଶେଷଜ୍ଞ' ବାବା ନୁହନ୍ତି । ସେ ଉଭୟଙ୍କୁ ଭଲ ପାଉଥିଲେ, ତେଣୁ ଏମିତି ହେବା କଥା ବୋଲି ତାଙ୍କର ମନକୁ ଆସୁଥିଲା । କିନ୍ତୁ ବଡ଼ ହେଲାରୁ ତାଙ୍କୁ ଭାବିବାକୁ ପଡ଼ିଲା, ତାଙ୍କର କ୍ରମବର୍ଦ୍ଧମାନ ନିଜତ୍ୱବୋଧକୁ ନେଇ - କାହିଁକି ଏମିତି ହେବ ?

ସେଇଠୁଁ ସେ ଦେଖନ୍ତି ତାଙ୍କ ପରିପାର୍ଶ୍ୱରେ ଥିବା ଅନ୍ୟମାନଙ୍କୁ, ଏବଂ ତାଙ୍କର ମନେହୁଏ ଯେ ଏହାହିଁ ହେବାକୁ ବାଧ୍ୟ, ବାହାହେଲା ପରେ । କେତେକ ଜ୍ୱଳନ୍ତ ଦୃଷ୍ଟାନ୍ତ ତାଙ୍କୁ ସାବଧାନ କରିଦିଏ ଏ ବିଷୟରେ । ଏବଂ ସେ ସେମାନଙ୍କୁ କୁହନ୍ତି ମନେ ମନେ - ହଁ ହେ ବୀରବରଗଣ, ମୁଁ ଦେଖୁଛି ତମମାନଙ୍କୁ, ତମେସବୁ କେତେ ଖୁସି ଅଛ ତମ ଘରଣୀଙ୍କୁ ନେଇ । ଆପଣାର ପକ୍ଷଛେଦନ କରି ।

ଧର ଏଇ ଭାନୁ ମିଶ୍ର, କାଲିକା ଟୋକା କହିଲେ ଚଳେ, ମୋଠାରୁ ପାଞ୍ଚ-ଛଅବର୍ଷ ଜୁନିଅର୍ । ହପ୍ତାକୁ ତିନିଚାରିବାର ବ୍ରିଜ୍ ନ ଖେଳିଲେ ତା' ପେଟ ପୂରେ ନାହିଁ । ହେଲେ ମୁଁ କ'ଣ ଦେଖୁ ନାହିଁ ତା'ର ଦଶା ବାହାଘର ପରଠୁଁ ? କେମିତି ଏକ୍ସକିଉଜ୍ ମାଗୁଛି

ଆମଠୁଁ, କୋଉ ବ୍ରିଜ୍ ଆସରର ନିମନ୍ତ୍ରଣ ପାଇଲେ ? ଯାବତୀୟ ବାହାନା ବାଢ଼ି ଦେଇ । କୋଉ ଭାଇନା ଆସି ପହୁଞ୍ଚିବେ ସଞ୍ଜବେଳକୁ, ଡାକ୍ତର ସାଙ୍ଗରେ ଆପଏଣ୍ଟ୍‌ମେଣ୍ଟ୍ ଅଛି, ଇତ୍ୟାଦି । କିନ୍ତୁ ଅସଲ କାରଣ କ'ଣ ଜଣା ନାହିଁ ମୋତେ ? କାରଣ ହେଉଛି ତୋର ସେଇ ଫୁଲେଇ ନବପରିଣୀତା ବନିତା, ଯେ ଗୋଟାଏ ଉଚ୍ଚମନ୍ୟ ସ୍ମିତହାସ ସବୁବେଳେ ବାନ୍ଧି ରଖିଥାଏ ତା' ଓଠରେ । ସେ ଚାହେଁ ନାହିଁ ତାଙ୍କ ଦି' ଜଣିଆ ସଞ୍ଜଗୁଡ଼ାକ ଏମିତି ନଷ୍ଟ ହୋଇଯିବ । ଖୋଦ୍ ଭାନୁର ପାଟିରୁ ଦିନେ ବାହାରିଲା ସେ କଥା । କହିଲା, ବନି ବୁଝେ ନାହିଁ ଆମକୁ ସବୁ କ'ଣ ମିଳେ ଏଇ ଷ୍ଟୁପିଡ୍ ସାହେବ-ବିବି ଗୋଲାମଙ୍କ ରାଜ୍ୟରୁ, ଆମ ନିଜ ରାଜ୍ୟ ଥାଉଁ ଥାଉଁ । କହି ହେଁ ହେଁ ହୋଇ ହସିଲା, ପତ୍ନୀଙ୍କର ଗୋଟାଏ ଚତୁରୋକ୍ତି ଶୁଣାଇଲା ପରି । ତା' ହସଖଣ୍ଡକ ଯେ କେତେ ଷ୍ଟୁପିଡ୍ ଲାଗୁଥାଏ ମୋତେ ସେତେବେଳେ, ତା' ସେଁ ବୁଝିପାରିବ ନାହିଁ ।

ହୁଏତ କହିବ ଯେ ଭାନୁଟା ଯେତେହେଲେ ଅର୍ବାଚୀନ, ଟୋକାଟାକଳିଆ, ଯେଉଁମାନେ ଏମିତି ବାନ୍ଧି ହୋଇଯାଆନ୍ତି ତାଙ୍କ ପତ୍ନୀର ପଣତରେ । କିନ୍ତୁ ଆମର ପୁରୁଣା ସେକ୍ରେଟେରୀ ପାତ୍ରସାହେବଙ୍କୁ କ'ଣ କହିବ ? ଫାଇଲ୍‌ରେ ରୋକ୍‌ଠୋକ୍ ଆଦେଶ-ନିର୍ଦ୍ଦେଶ ଦେଇ ଲମ୍ବା ଦସ୍ତଖତ୍‌ଟାଏ ମାରିବାରେ କେହି ବଳେଇ ଯିବ ନାହିଁ ତାଙ୍କୁ । କିନ୍ତୁ ମୁଁ କ'ଣ ଦେଖି ନାହିଁ ସାର୍ କେମିତି ଚୋରଙ୍କପରି ହୁଅନ୍ତି, କେଉଁ ପାର୍ଟିରେ ହୁଇସ୍‌କି ଗିଲାସଟିଏ ପାଟିକୁ ନେଲାବେଳେ, କାଳେ କିଏ ଦେଖିନେବ ତାଙ୍କୁ ? ଡାକ୍ତର ତାଙ୍କୁ ମନା କରିଛି କେବେହେଲେ ଯୋଡ଼ାଏ ପେଗ୍‌ରୁ ବେଶି ପିଇବାପାଇଁ । କିନ୍ତୁ ଶୀଳା ମେମ୍‌ସାହେବଙ୍କ ତାଗିଦ୍ ହେଉଛି ଯେ ତମେ ମୂଳରୁ ହୁଇସ୍‌କି ଇତ୍ୟାଦିର ପାଖ ମାଡ଼ିବ ନାହିଁ । କୁଆଡ଼େ କହିଲେ - ଯାହା ସାର୍ ନିଜେ କହୁଥିଲେ ଥରେ ତାଙ୍କ ସ୍ତ୍ରୀଙ୍କର ପତିବ୍ରତାପଣର ନମୁନା ଦେଲା ପରି - "କଅଣ ସେଇ ଗୋରୁମୂତ ଟିକିଏ ନ ପିଇଲେ ତମ ଜୀବନ ନଷ୍ଟ ହୋଇଯାଉଛି ? ଆଉ କିଛି ମିଳୁ ନାହିଁ ତମକୁ, ତମ ପୁରୁଷତ୍ୱକୁ ଟେକିବାପାଇଁ ?" କହି ସେ ମଧ ଦାନ୍ତ ଦେଖେଇ ବସିଥିଲେ ମିସେସ୍‌ଙ୍କର ଗୋଟାଏ ବିଜ୍ଞ ଚତୁରୋକ୍ତି ଶୁଣାଇଲା ପରି । ଆଉ ତାଙ୍କର ସେଇ ହସ, ଭାନୁ ମିଶ୍ରର ହସଠାରୁ କିଛି କମ୍ ଷ୍ଟୁପିଡ୍ ଲାଗୁ ନ ଥିଲା ମୋତେ !

ଉଣାଅଧିକେ ସବୁ ସ୍ୱାମୀ ସେମିତି, ତାଙ୍କ ସ୍ତ୍ରୀମାନଙ୍କପାଇଁ । ସେ ଟୋକା ଭାନୁ ମିଶ୍ର ହେଉ କି ବରିଷ୍ଠ ପ୍ରାଣନାଥ ପାତ୍ର । ସେମାନେ ବାଧ୍ୟ ହୁଅନ୍ତି ନିଜର ଛୋଟ ବଡ଼ ରୁଚି ଏବଂ ଆଗ୍ରହକୁ ଦବେଇବା ପାଇଁ, ତାଙ୍କ ସ୍ତ୍ରୀମାନଙ୍କୁ ଖୁସି କରିବା ଲାଗି । ଡଃ ସେନ୍ ହେଜନ୍ତି ସଂସାରର, ବିଶେଷତଃ ଭାରତୀୟ ସଂସାରର ଏଇ ସରଳ ସାଧାରଣ ସତ୍ୟଟିକୁ । ଏବଂ ନିଜକୁ ଧନ୍ୟବାଦ ଦିଅନ୍ତି ଯେ ସେ ସେଇ ସତ୍ୟଟିକୁ ଗ୍ରହଣ କରିପାରି ନାହାନ୍ତି ଆଜିଯାଏ । ଗୋଟାଏ ସରଳସାଧାରଣ ବିପଦରୁ ରକ୍ଷା ପାଇ ଯାଇଛନ୍ତି !

କିନ୍ତୁ ତାଙ୍କ ମନକୁ କ'ଣ ଆସେ ନାହିଁ ଯେ ଦୁନିଆର ସବୁ ସ୍ୱାମୀ ଭାନୁ ମିଶ୍ର କି ପାତ୍ର ସାହେବଙ୍କ ପରି ନୁହନ୍ତି, ଯେଉଁମାନେ ତାଙ୍କ ସ୍ତ୍ରୀଙ୍କ ଇଚ୍ଛା ଅନିଚ୍ଛା ପ୍ରତି ଏତେ ଗୁରୁତ୍ୱ ଦିଅନ୍ତି ? ଅନେକ ଅନ୍ୟମାନେ କ'ଣ ନାହାନ୍ତି ଯେଉଁମାନେ ତାଙ୍କ ମର୍ଦ୍ଦପଣିଆ ଦେଖାଇ ସ୍ତ୍ରୀଙ୍କ କଥାକୁ ଖାତିର୍ କରନ୍ତି ନାହିଁ ? ହଁ, ସେ ସେମାନଙ୍କୁ ମଧ ଦେଖିଛନ୍ତି, ଚିହ୍ନିଛନ୍ତି । ହେଲେ ସେ ସେମାନଙ୍କୁ ଆଦୌ ପସନ୍ଦ କରିପାରନ୍ତି ନାହିଁ । ତାଙ୍କର ସେଇ ମର୍ଦ୍ଦପଣିଆ ଗୋଟାଏ ବନ୍ୟଜନ୍ତୁସୁଲଭ ଅସଭ୍ୟ ଆଚରଣ ପରି ମନେହୁଏ । ସେ ହିସାବରେ 'ସ୍ତ୍ରୀବୋଲକରା'ମାନଙ୍କ ସଂସାରକୁ ସେ ପାସ୍ ମାର୍କ୍ ଦିଅନ୍ତି ଏବଂ ମନେପଡ଼େ ବାବାମାଆଙ୍କ ଦାମ୍ପତ୍ୟ ଜୀବନ । ସେମାନେ ପାସ୍‌ମାର୍କଠାରୁ ଅନେକ ଅଧିକ ମାର୍କ୍ ପାଇବାର ଯୋଗ୍ୟ । ଅବଶ୍ୟ ବାବାଙ୍କୁ ଠିକ୍ ସ୍ତ୍ରୀବୋଲକରା ବୋଲି କୁହାଯାଇ ନ ପାରେ... ସେଇଠୁଁ ଗୋଟାଏ ଘଷରା ଶବ୍ଦର ଗୁଞ୍ଜରଣକୁ ସେ 'ହଉ ହେଲା' ବୋଲି କୁହନ୍ତି । ଶବ୍ଦର ନାଆଁ ଭଲପାଇବା ।

କିନ୍ତୁ କଥା ହେଉଛି ଯେ ଏଇ ତଥାକଥିତ ଭଲପାଇବା ଏବଂ ତାକୁ ନେଇ ଗୋଟାଏ ଘରକରଣା, ଯେଉଁଥିରେ ତମ ନିଜତ୍ୱରୁ କିଛିହେଲେ ଉତାରି ଦେବାକୁ ପଡ଼ିବ ଆଉ ଲୋକଟିକୁ ଖୁସି କରିବା ଲାଗି, ତା'ର ଦରକାର କ'ଣ ? ଆଇ ମିନ୍, ଜିନିଷଟା କ'ଣ ଏତେ ଜରୁରି, ତା' ଯେତେ ସର୍ବସାଧାରଣ ଓ ସର୍ବସମ୍ମତ ହେଉ ପଛେ ? ସେଇଠୁଁ ସେ ନିଜକୁ କୁହନ୍ତି - ଆରେ, ଡଃ ସେନ୍ ସର୍ବସାଧାରଣ ବୋଲି କିଏ କହିଲା ? ତହୁଁ ସେ ତାଙ୍କ ଅନେକ ଦିନର ନିର୍ଣ୍ଣୟକୁ ଦୋହରେଇ ହୁଅନ୍ତି -

ନାଃ ! ମୁଁ ବାହା ହେବି ନାହିଁ ।

ମୋର ଦରକାର ନାହିଁ ସେମିତିକା ସୁଖମୟ ଦାମ୍ପତ୍ୟ ଜୀବନ । ମୁଁ ମୋ ନିଜତ୍ୱର ଚେନାଏ ଚିରୁଡ଼ାଏ ବି ବଢ଼େଇ ଦେବାକୁ ନାରାଜ ଆଉ କାହା ହାତକୁ । ସିଏ ମୋର ଅଳ୍ପସ୍ୱଳ୍ପ ସିଗାରେଟ୍ ପିଇବା ହେଉ (ସେ ଆଗେ ଦିନକୁ ଦି'ଥର 'ଇଣ୍ଡିଆ କିଂଗ୍' ସିଗାରେଟ୍ ପିଉଥିଲେ), କେବେ କେମିତି ଟିକିଏ ମଦ୍ୟସେବନ, ଆରାମଚଉକିରେ ଲମ୍ବିଯାଇ ଘଣ୍ଟା ଘଣ୍ଟା ଧରି ବହି ପଢ଼ିବା ଅଭ୍ୟାସ, ଅବା ମୋର ନିଶ୍ଚିତ ମୂଲ୍ୟବୋଧ ଅର୍ଥାତ୍ ମୋର ସଚ୍ଚୋଟପଣିଆ, କର୍ତ୍ତବ୍ୟ ନିଷ୍ଠା, ବୌଦ୍ଧିକତା ଇତ୍ୟାଦିର ଅନୁଯାୟୀ ମୁଁ ଯାହା କରିବାକୁ କିମ୍ବା ନ କରିବାକୁ ଚାହେଁ । ନା, ଆଇ ଆମ୍ ସରି, ମୁଁ ବାହା ହେବି ନାହିଁ । ଖାଲି ମୋର ନୁହେଁ, ସମାଜର ମଙ୍ଗଳ ସେଥିରେ ।

ଆଚ୍ଛା ହେଉ, ସମାଜର ମଙ୍ଗଳ କଥା ଛାଡ଼ିଦିଅ, ମୋ ନିଜର କ'ଣ ଭଲା କ୍ଷତି ହେଉଛି ବାହା ନ ହୋଇ ? ବେଳେବେଳେ ତାଙ୍କ ବୁଦ୍ଧିଜୀବୀ ମନ ତାଙ୍କୁ ଉସ୍‌କାଏ ପ୍ରଶ୍ନଟାର ଲାଭକ୍ଷତିମୂଳକ ବିଶ୍ଳେଷଣ କରିବା ଲାଗି । ପ୍ରାକ୍ଟିକ୍ୟାଲ୍ ଦୃଷ୍ଟିରୁ । ନିଜତ୍ୱହାନିର ବ୍ୟାପକ ଆଶଙ୍କାକୁ କୋହଳ କରି କିଛି ସମୟ ପାଇଁ ।

ଘରକରଣା ? ପୂଝାରୀ, ଚାକର, ଚାକରାଣୀ, ମାଳୀ, ଡ୍ରାଇଭର୍ ଆଦି କ'ଣ ଯଥେଷ୍ଟ ଲୋକ ନାହାନ୍ତି ସେଥିପାଇଁ, ମୋର, ବାବାଙ୍କର ତଥା ମୋ ବାରିବଗିଚା, ଘରଦୁଆର ଏବଂ 'ଟାଇଗର୍'ର ଖବର ବୁଝିବା ଲାଗି ? ସେମାନେ କ'ଣ ଯୋଗ୍ୟ ନୁହନ୍ତି ? ଆଉ ଯଦିବା କେହି ଅଯୋଗ୍ୟ ବୋଲି ପ୍ରମାଣିତ ହେଲା, ମୋତେ କେତେ ସମୟ ଲାଗିବ ତାକୁ ବାହାର କରି ଦେଇ ଆଉ ଜଣକୁ ରଖିବା ଲାଗି, ହୁଏତ କିଛି ଅଧିକ ଦରମା ଦେଇ ?

ସମ୍ପର୍କର ସାଥୀଟିଏ ? କିଓ, କାହିଁକି ? ଦିନଯାକ କର୍ମଜୀବନର ହାକିମ-କିରାଣି, ସହକର୍ମୀ-ସାଙ୍ଗ, ପ୍ରାର୍ଥୀ-ପ୍ରତିଦ୍ୱନ୍ଦ୍ୱୀ ଆଦି ଯାବତୀୟ ଚରିତ୍ରମାନଙ୍କ ସାଙ୍ଗରେ ସମ୍ପର୍କ ଯୋଡ଼ିସାରିଲା ପରେ (ଏବଂ ଅଧିକାଂଶରେ ବାଧ ହୋଇ) ତମର ପୁଣି ଗୋଟାଏ ସମ୍ପର୍କ ଲୋଡ଼ା, ତମର ଆରାମକୁ ଚହଲେଇ ଦେବା ଲାଗି ? ସିଏ କୋଉ କଅଁଳିଆ ଗେହ୍ଲେଇଫୁଲେଇ କଥାର ତାଡ଼ନା ହେଉ, କି ରାଗ ଅଭିମାନ ? ନୋ, ଥ୍ୟାଂକ୍ସ । ତା'ଛଡ଼ା ଏ ଦିଗରେ 'ଟାଇଗର୍' କୁକୁରର ଭୂମିକାକୁ ଊଣା ବୋଲି ଭାବ ନାହିଁ ।

ପିଲାଛୁଆ ? କ'ଣ ରାଜବଂଶର ଭବିଷ୍ୟତ ପାଇଁ ? ଡଃ ସେନ୍ ହସିଉଠନ୍ତି ମନକୁ ମନ । କ୍ଷମା କର, ମୋର ଆତ୍ମା ଛଟପଟ ହେବ ପୁଅନାତିଙ୍କଠାରୁ ମୁଠାଏ ଶ୍ରାଦ୍ଧଚାଉଳ ନ ପାଇଲେ, ସେ ବିଶ୍ୱାସ ମୋର ନାହିଁ । ତା' ବୋଲି ମୋ ସଂସାରରେ ସ୍ନେହଭାଜନ 'ପୁଅଝିଅ' କ'ଣ କିଛି କମ୍ ଅଛନ୍ତି ? ଅନେକ ଅଛନ୍ତି, ଅନେକ । ଯେଉଁମାନେ ମୋତେ ଭଲ ପାଆନ୍ତି । କାରଣ ମୁଁ ନାନା ଭାବରେ ତାଙ୍କର ଉପକାର କରିଛି । ନ୍ୟାଯ୍ୟ ବିହିତ ଉପକାର । ନା, ସେଥିରେ କେଉଁ ତୀବ୍ର ଭାବାବେଗ ନାହିଁ । ଅଥବା ତମେ ନିଜ ସ୍ୱାର୍ଥକୁ ବଳି ଦେଇପାରିବ ନାହିଁ ତାଙ୍କ ସୁଖ ପାଇଁ । ଏଇଆ କହିବ ନା ? ମାର ଗୋଲି ତମର ସେଇ ନିରୋଳା, ନିଃସ୍ୱାର୍ଥ, ନୈସର୍ଗିକ ଭଲପାଇବାକୁ ! ଯାହା ବଣିଚଢ଼େଇର ନୀଡ଼ ଅଥବା ମହାମିଛୁଆ କବିମାନଙ୍କୁ ସୁହାଏ । ହେଲେ ବୁଦ୍ଧିବୃତ୍ତିସଂପନ୍ନ ଡଃ ସେନ୍ ମାନଙ୍କର ଅଗମ୍ୟ । ଧନ୍ୟବାଦ ।

ହଁ, ଶେଷକୁ ଗୋଟାଏ ବୁଦ୍ଧିଆ କଥା କହିବାକୁ ଚାହିଁବ ତମ ଭିତରୁ କେତେଜଣ, ମନସ୍ତତ୍ତ୍ୱବିଜ୍ଞାନର ଦୁହାଇ ଦେଇ । ସେକ୍ସ । ସେକ୍ସ ଓ ବିବାହର ସମ୍ପର୍କକୁ ନେଇ ଗୋଟାଏ ମହାବୁଦ୍ଧିଆ କଥା କହି ନ ଥିଲେ କି ଚିରକୁମାର ଜର୍ଜ୍ ବର୍ଣ୍ଣାଡ୍‌ଶ ? କହିଲେ ଯେ ବାହାଘର ଜିନିଷଟା ଏତେ ଲୋକପ୍ରିୟ ହୋଇଛି କେବଳ ଗୋଟିଏ କାରଣରୁ । ଏଇ ଗୋଟିଏ ବ୍ୟବସ୍ଥା ଯେଉଁଥିରେ ଯଥେଷ୍ଟ ଯୌନପ୍ରବୃତ୍ତିର ସମନ୍ୱୟ ହୋଇପାରିବ ଯଥେଷ୍ଟ ସୁବିଧାସୁଯୋଗ ସାଙ୍ଗରେ । ଘରେ ଜଣେ ବନ୍ଧା ହୋଇ ରହିଛି ତମ ପାଇଁ, ତମେ ମଧ ରହିଛ ତା' ପାଇଁ, ତେଣୁ ଦିବ୍ୟ ଆରାମରେ ତମେ ପରସ୍ପରର ଶୋଷ ମେଣ୍ଟାଇ ପାରିବ । ଅବଶ୍ୟ ସେଥିର ଭାଉ ବଢ଼େଇବା ଲାଗି ତମେ ନିଜକୁ ଟିକିଏ ଠକେଇପାର । କବିମାନେ ସେଇ ଠକେଇବାଗୁଣ ଶିଖେଇଛନ୍ତି ତମକୁ । କ'ଣ ନା, ମୁଁ ଏଇ ଲୋକଟିକୁ ଭଲପାଏ !

ଯାହାହେଉ ଡଃ ସେନ୍‌କୁ କହିବାକୁ ପଡ଼ିବ ନାହିଁ ଯେ ଏଦିଗରେ ମଧ୍ୟ ତା'ର କୌଣସି ଅଭାବ ନାହିଁ । କେବେହେଲେ ନ ଥିଲା । ସେଥିପାଇଁ ତା'ର ରଜା ଚେହେରାକୁ ଧନ୍ୟବାଦ ଦିଅ, ଅଥବା ତା'ର ସ୍ୱଭାବଚରିତ୍ର ଓ ବିଦ୍ୟାବୁଦ୍ଧିକୁ, ଯେଉଁଥିରେ ସେମାନେ ମୋହି ହୋଇ ଯାଆନ୍ତି । ପିଲାଦିନର ବାବ୍‌ଲୁଦା, ବାବ୍‌ଲୁଭାଇ ବେଳଠୁଁ ଆରମ୍ଭ କରି ବିକ୍ରମବାବୁ, ଡଃ ସେନ୍, ଓ ସେନ୍‌ସାହେବଙ୍କ ଅମଳଯାଏଁ । କେତେ ଭଳି ପୁଚ୍ଛ ମେଲେଇ ଦିଅନ୍ତି, ବନମୟୂରକୁ ଲଜ୍ଜାଦେଇ, ଯେମିତିକି ତମେ ତା' ପାଖକୁ ଟାଣି ହୋଇଯିବ, ନିରୋଳାରେ ତା' ସାଙ୍ଗରେ ବସି କପେ ଚା' ଖାଇବା ପାଇଁ । ସେଇଠୁଁ ଆଉ ଦିନେ ଯିବ ତା' ହଷ୍ଟେଲ୍‌କୁ କିମ୍ବା ତା'ର କ୍ଲବ୍‌କୁ, ଅଥବା ଆଉ କେଉଁଠିକି, ନିରୋଳାରେ ଆଉ କେତେ କ'ଣ କରିବାପାଇଁ । ଯେଉଁଥିରେ ଦିହିଁଙ୍କ ପେଟ ପୂରିଯାଏ, ଶୋଷ ମେଣ୍ଟିଯାଏ । ତେଣୁ ବର୍ଣ୍ଣାଡ଼୍‌ଶ ମହାଶୟଙ୍କ ଛିଗୁଲିଆ ପରାମର୍ଶର କୌଣସି ଉପଯୋଗିତା ନାହିଁ ଡଃ ସେନ୍ ପାଇଁ । କାହିଁକିନା, ଶ' ସାହେବ, ମୁଁ ମଧ୍ୟ ଜଣେ ଅସାଧାରଣ ବ୍ୟକ୍ତି, ତମପରି । ବୁଝିଲ ?

ନାଃ ! ମୁଁ ବାହା ନ ହୋଇଛି, ଭଲ ହୋଇଛି । ହାଣମୁହିଁକୁ ବେକ ଦେଖେଇ କାହିଁ କୋଉ ଅପୂର୍ବ ଦାମ୍ପତ୍ୟ ସୁଖ ପାଇବି ବୋଲି । ଭଗବାନ୍‌ଙ୍କ କୃପା ।

ଚଉରାଳିଶ ବର୍ଷ ବୟସର ସ୍ୱନାମଧନ୍ୟ ବିଦ୍ୱାନ୍-ପ୍ରଶାସକ ଡଃ ସେନ୍ ଏହିପ୍ରକାର ଧନ୍ୟବାଦ ଦିଅନ୍ତି ମଝିରେ ମଝିରେ ଭଗବାନ୍‌ଙ୍କୁ । ଭଗବାନ୍‌ଙ୍କ ପ୍ରତି ତାଙ୍କର ସତସତିକା ବିଶ୍ୱାସ ଥାଉ ବା ନ ଥାଉ ।

ତା'ସାଙ୍ଗକୁ ସେ ନିଜକୁ ଧନ୍ୟବାଦ ଦେବାକୁ ଭୁଲନ୍ତି ନାହିଁ ଯେ ତାଙ୍କୁ ଜଣା ଅଛି ଏଇ ସେକ୍ସ ଉପଭୋଗକୁ କେମିତି ତା'ର ସ୍ୱସ୍ଥାନରେ ରଖି ଫେରିଆସିବାକୁ ହୁଏ । ନ ହେଲେ ବିପଦ । ରସିକତାପୂର୍ବକ ସେଇ କଥାଟିକୁ କୁହନ୍ତି ମନେ ମନେ ତାଙ୍କ ବଗିଚାର ତୃପ୍ତ ନାଲି ଗୋଲାପଟିକୁ ତଥା ସଦ୍ୟତମ ସେକ୍ସରମଣୀର ଶେଯରୁ ଉଠିଆସି ତା'ର ସତୃପ୍ତ ଚାହାଣିର ଅଙ୍ଗୀକାର ଦେବାକୁ ଯାଇ । କୁହନ୍ତି - ଏଇ ଅନୁଭବଟିକୁ ସାଇତି ରଖିଥିବୁ ତୋର ସ୍ମୃତି ପଟରେ । କାରଣ ମୋର ବେଳ ହେଲାଣି ଆଉ କୋଉ ଗୋଲାପ ଏବଂ ଗୁଲ୍‌ସନ୍‌କୁ ଗେହ୍ଲା କରିବି । ନ ହେଲେ ଅସୁବିଧା । ସଦାନୂତନ ସଦାସୁନ୍ଦର ଅନୁଭବକୁ ଲୋଡ଼ିବା, ଲଭିବା ଏବଂ ଠିକଣା ସମୟରେ ସେଥିରୁ ଓହରି ଯିବା ହିଁ ବୁଦ୍ଧିମାନ୍ ମଣିଷର ଧର୍ମ । କାହାରି ସାଙ୍ଗରେ ବାନ୍ଧି ହୋଇଯିବା ନୁହେଁ, ଯେଉଁଥିରେ 'ସଦାସର୍ବଦା' ହିଁ ସାର ହୋଇ ରହିଯିବ ତମ ଅନୁଭବରେ, 'ସୁନ୍ଦର' ନୁହେଁ, କି 'ନୂତନ' ନୁହେଁ । ଏବଂ ଡଃ ସେନ୍ ଧୀରେସୁସ୍ଥେ ଆଡ଼େଇ ହୋଇଯାଆନ୍ତି ତାଙ୍କର ପ୍ରେମାସ୍ପଦାମାନଙ୍କଠାରୁ । ଯଥା ସମୟରେ । କେଉଁ ସୁମଧୁର ମୁହୂର୍ତ୍ତଟିଏ ତିଆରି କରି ଶେଷ ବେଳକୁ, ସ୍ମୃତିରେ ସଂପାଦି ରଖିବାପାଇଁ ।

ଏହି ପରିପ୍ରେକ୍ଷୀରେ କେତୋଟି ତଥ୍ୟ ଭୁଲିବାର ନୁହେଁ ଡଃ ସେନ୍‌ଙ୍କ ସ୍ୱଭାବ ଚରିତ୍ର ଓରଫ୍ ବ୍ୟକ୍ତିତ୍ୱକୁ ନେଇ । ସେ ସେକ୍ସ-ଅନୁଭବର ଆଗ୍ରହୀ ହୋଇପାରନ୍ତି, କିନ୍ତୁ ଉଚ୍ଛୃଙ୍ଖଳ ନୁହନ୍ତି । କାମାତୁର ନୁହନ୍ତି । ତେଣୁ ଗୁଲ୍‌ସନ୍ ପରେ ପରେ ସେ ଚଟ୍‌କିନି ଆଉ କେଉଁ ନୂତନ-ସୁନ୍ଦରର ସଂଧାନୀ ହେବାକୁ ଚାହାଁନ୍ତି ନାହିଁ । ଅପେକ୍ଷା କରନ୍ତି । ଅବଶ୍ୟ ମାନିବାକୁ ପଡ଼ିବ ଯେ ତାଙ୍କ ଚେହେରା କି ବ୍ୟକ୍ତିତ୍ୱର କରାମତି ଯୋଗୁଁ , ତାଙ୍କୁ ଅନେକ ଅଧିକ ଦିନ ଅପେକ୍ଷା କରିବାକୁ ପଡ଼େ ନାହିଁ ।

ଏବଂ ମନେରଖିବାକୁ ହେବ ଯେ ଏଇ ସେକ୍ସ-ଉଦିଷ୍ଟ ପ୍ରେମରେ ମଧ ସେ ତାଙ୍କର ଏକ ବିଶିଷ୍ଟ ସ୍ୱଗୁଣକୁ ହାତଛଡ଼ା କରିବାକୁ ଦିଅନ୍ତି ନାହିଁ । ତା' ହେଉଛି ସଚ୍ଚୋଟପଣିଆ । ହଁ, ସମାଜର ଚଳନ୍ତି ସଂସ୍କାର ଅନୁଯାୟୀ ସେ ଗୋପନରେ ପ୍ରେମ ହୁଅନ୍ତି ସେମାନଙ୍କ ସାଙ୍ଗରେ । କିନ୍ତୁ ବୁଝିରଖିଥାଆନ୍ତି ଯେ ସେମାନେ ସମସ୍ତେ ଅନୂଢ଼ା ଏବଂ ସାବାଳିକା । ସେହେତୁ ତାଙ୍କ ନୀତିବୋଧ କୁହେ ଯେ ଏଥିରେ କିଛି ଦୋଷ ନାହିଁ । ମୋର କିମ୍ବା ସେମାନଙ୍କର । ଆମେ କେଉଁ ତୃତୀୟ ବ୍ୟକ୍ତିକୁ ଠକଉ ନାହିଁ । ଆମେ ଯାହା କରୁଛୁ ପରସ୍ପରକୁ ନେଇ, ତାହା ଆମର ସ୍ୱାଧିକାର ଏବଂ କେଉଁ ଆଧୁନିକ ବୋଲାଉଥିବା ମଣିଷ କହିପାରିବ କି ଯେ ସେକ୍ସଜୀବନ ସେହି ସ୍ୱାଧିକାରର ଅନ୍ତର୍ଭୁକ୍ତ ନୁହେଁ ? ହେଲେ ସେ ସଦା ସାବଧାନ ହୋଇ ରହିଥାଆନ୍ତି 'ପାପଗର୍ଭ' ନାମକ ଗଣ୍ଡଗୋଳ ପ୍ରତି । କୁହନ୍ତି ଆମେ ଯୌନପ୍ରବୃତ୍ତିକୁ ସ୍ୱୀକାର ନ କରି ରହିପାରିବୁ ନାହିଁ ସିନା, କିନ୍ତୁ ଆମେ ପ୍ରବୃତ୍ତିର ପୁତଳିକା ନୋହୁଁ ।

ହେଲେ ଗୋଟିଏ ବ୍ୟତିକ୍ରମ ଆସିଥିଲା ଥରେ, ମାତ୍ର ଥରୁଟିଏ, ତାଙ୍କର ଏଇ ପ୍ରେମ୍-ସେକ୍ସ୍ ଜୀବନକୁ ନିଭାଇବାରେ । ଏଇ ବୟସରେ, କ୍ୟାପିଟାଲ୍‌କୁ ଆସି, ଏକ ନୂଆ ଅତିବିଶିଷ୍ଟ ଦାୟିତ୍ୱ ତୁଲାଇଲା ବେଳେ । ଯେତେବେଳେ ସେ ତାଙ୍କ ସଫଳ ଜୀବନର ଶୀର୍ଷରେ ଥିଲା ପରି ମନେ କରୁଥିଲେ ନିଜକୁ ଏବଂ ମହାବିଚିତ୍ର ଥିଲା ସେଇ ବ୍ୟତିକ୍ରମ । ଓଃ ! ଡଃ ସେନ୍ ସେଇ ସ୍ମୃତିର ପାଖ ମାଡ଼ିବାକୁ ଚାହାଁନ୍ତି ନାହିଁ ।

ତା' ପୂର୍ବରୁ କିଛି କହିବାକୁ ପଡ଼ିବ ତାଙ୍କର ଏଇ ଅତିବିଶିଷ୍ଟ ସରକାରୀ ଦାୟିତ୍ୱ ବିଷୟରେ, ଯାହାକୁ ନିଜେ ମୁଖ୍ୟମନ୍ତ୍ରୀ ସଁପି ଦେଇଛନ୍ତି ତାଙ୍କ ହାତରେ । ସେ କହିଛନ୍ତି ତାଙ୍କୁ ବସେଇ ବସେଇ - "ମୁଇଁ ଆପଣଙ୍କୁ ବାଛିଛି ଡଃ ସେନ୍, କେବଳ ଆପଣହିଁ ଆମକୁ ଉଦ୍ଧାର କରିପାରିବେ ଆମର ଏଇ ଜାତୀୟ ବିପଦରୁ.... ।" ବିପଦର ନାଆଁ ଦୁର୍ନୀତି । ଯାହା ଜାତିଟାକୁ ନଷ୍ଟ କରିଦେଲାଣି ବୋଲି ମନେହୁଏ । କିନ୍ତୁ ତଥାପି ବେଳ ଅଛି । ଏଇ ତରୁଣ ମୁଖ୍ୟମନ୍ତ୍ରୀ ଗାଦିକୁ ଆସିଛନ୍ତି ସେହି ପ୍ରତିଶ୍ରୁତି ନେଇ । ଯେ ବେଳ ଥାଉଁ ଥାଉଁ ସେ ଦୁର୍ନୀତିର ମୂଳୋତ୍‌ପାଟନ କରିବେ ଆମ ରାଜ୍ୟରୁ ଏବଂ ଫେରାଇ ଆଣିବେ ତା'ର ଅପହୃତ ଗୌରବ । କିନ୍ତୁ କେମିତି ? ଗୋଟାଏ କିମିଟି ଗଢ଼ା ହେଉ

ବୋଲି ପରାମର୍ଶ ମିଳିଥିଲା ତାଙ୍କୁ । କିନ୍ତୁ ସେ ରାଜିହେଲେ ନାହିଁ । କହିଲେ ଇଏ ଗୋଟିଏ ଚିରାଚରିତ ବ୍ୟୁରୋକ୍ରାଟ୍‌ସୁଲଭ କାରସାଦି । ସମୟ ଗଡ଼େଇବାର ଫନ୍ଦି । କମିଟିର କାର୍ଯ୍ୟକାଳ ବଢ଼ି ବଢ଼ି ଯିବ, ତହୁଁ ବିଭିନ୍ନ ସବ୍‌କମିଟି, ତହୁଁ ଅସରନ୍ତି ଆଳାପ ଆଲୋଚନା । ନା ସେସବୁ ଚଳିବ ନାହିଁ । ମୁଁ କେବଳ ଜଣକୁହିଁ ବାଛିବି ଏବଂ ତାକୁ ନିର୍ଦ୍ଧାରିତ ସମୟ ଭିତରେ ରିପୋର୍ଟ ଦେବାକୁ ହେବ, ଯେମିତି ହେଲେ । ଆମେ ସମସ୍ତେ ଜାଣୁ କେଉଁପ୍ରକାର ଦୁର୍ନୀତି ରହିଛି, କେଉଁ ସ୍ତରରେ ଏବଂ କେଉଁ ବିଭାଗରେ । ତା'ର ଅନୁସନ୍ଧାନ ଲୋଡ଼ା ନାହିଁ । କିନ୍ତୁ ଜଣେ ନିର୍ଭୀକ, ସଚ୍ଚୋଟ ଏବଂ ଅଭିଜ୍ଞ ଲୋକ ଠିକେ ଠିକେ କହିଦେଉ ଆମକୁ ଯେ ଏଇ ହେଉଛି ତାକୁ ଦୂର କରିବାର ଉପାୟ । ଏକ... ଦୁଇ... ତିନି... ।

ସେହି ନିର୍ଭୀକ, ସଚ୍ଚୋଟ ଏବଂ ଅଭିଜ୍ଞ ବ୍ୟକ୍ତିଜଣକ ହେଲେ ଡଃ ସେନ୍ । ଏକାଧାରରେ ଜଣେ ପଣ୍ଡିତ ଏବଂ ପ୍ରବୀଣ ପ୍ରଶାସକ । ରାଜନୀତି ବିଜ୍ଞାନରେ ପ୍ରଥମ ଶ୍ରେଣୀ ଏମ୍.ଏ. । ସେଇଠୁଁ "ବିକାଶଶୀଳ ଦେଶର ମୌଳିକ ସମସ୍ୟା" ଉପରେ ଥିସିସ୍ ଲେଖି ଡକ୍ଟରେଟ୍ ପାଇଛନ୍ତି । ସରକାରୀ ଚାକିରିକୁ ଆସିଲା ପରେ ମଧ୍ୟ କେତେ କ'ଣ ଲେଖିଚାଲିଛନ୍ତି । ଖାଲି ଓଡ଼ିଆରେ ନୁହେଁ, ମଧ୍ୟ ଇଂରାଜୀରେ, ଯାହା ସର୍ବଭାରତୀୟ ପତ୍ରପତ୍ରିକାରେ ପ୍ରକାଶ ପାଇଛି ଏବଂ ଆଦୃତ ହୋଇଛି । ଏଣେ ଲୋକଟା ଦକ୍ଷ, ଏଥିରେ ସନ୍ଦେହ ନାହିଁ, ଯାହା ତା'ର ଚରିତ୍ରପଞ୍ଜିକାର ଛତ୍ରେ ଛତ୍ରେ ଫୁଟି ଉଠୁଛି ଏବଂ ସବୁଠାରୁ ବଡ଼ ପ୍ଲସ୍ ପଏଣ୍ଟ ହେଉଛି ତା'ର ସଚ୍ଚୋଟପଣିଆ । ଅଭିଆଡ଼ା, ତେଣୁ ସହଜେ ତା'ର ସ୍ୱାର୍ଥ ସୀମିତ । କିନ୍ତୁ ଖାଲି ସେଥିପାଇଁ ନୁହେଁ । ଲୋକଟାର ସ୍ୱଭାବ ଚରିତ୍ର ଭିନ୍ନ । ବାରି ହୋଇଯାଏ ଅନ୍ୟମାନଙ୍କ ଠାରୁ । ମୁଖ୍ୟମନ୍ତ୍ରୀଙ୍କୁ କୁଆଡ଼େ ଦି'ଦିନରୁ ବେଶି ଲାଗି ନ ଥିଲା ତାଙ୍କୁ ବାଛିବା ପାଇଁ । ସେଇଠୁଁ ଏହି ଅତିବିଶିଷ୍ଟ ଦାୟିତ୍ୱ ଯଚା ହେଉଛି ତାଙ୍କୁ । ପଦବୀର ନାଆଁ ସ୍ପେଶାଲ୍ ରିଫର୍ମସ୍ କମିଶନର୍ । ରାଜଧାନୀରେ ରହିବେ ଏବଂ ତାଙ୍କର ଏକମାତ୍ର କାମ ହେଉଛି ଛଅମାସ ମଧ୍ୟରେ ଗୋଟିଏ ରିପୋର୍ଟ୍ ପେସ୍ କରିବେ, ସିଧା ମୁଖ୍ୟମନ୍ତ୍ରୀଙ୍କୁ ଯେ କେମିତି ଏବଂ କେଉଁ ଭାବରେ ଦୁର୍ନୀତି ଦୂର କରାଯାଇପାରିବ ଆମର ଜାତୀୟ ଜୀବନରୁ । ରାଜ୍ୟସ୍ତରୀୟ ଜୀବନରୁ ଆରମ୍ଭ କରି । ପ୍ରଶାସନିକ କାଇଦା କଟକଣାର ଗୋଟିଏ ଇସ୍ତାହାର ପ୍ରସ୍ତୁତ କରିବାକୁ ପଡ଼ିବ । ଏଇ ହେଉଛି ଦୁର୍ନୀତି, ଏବଂ ଏଇ ତା'ର ପ୍ରତିକାର । ଏକ... ଦୁଇ... ତିନି... । କଅଣ ପାରିବେ ଆପଣ ଡଃ ସେନ୍ ?

କହିଲେ ଅତ୍ୟୁକ୍ତି ହେବ ନାହିଁ ଯେ ଡଃ ସେନ୍‌ଙ୍କ ମୁହଁରୁ "ୟେସ୍ ସାର୍, ଥ୍ୟାଂକ୍ ୟୁ" ବୋଲି ଯେଉଁ ପଦୁଟିଏ ବାହାରିଲା, ତା' ପଛରେ ଥିଲା ଏକ ଗଭୀର କୃତଜ୍ଞତାର ଭାବ । ଯେ ଧନ୍ୟବାଦ, ଏତେଦିନକେ ଏଭଳି ଗୋଟିଏ କାମ ମିଳିଛି ଡଃ ସେନ୍‌କୁ, ଯେଉଁଥିରେ ତା'ର ବିଦ୍ୟାବୁଦ୍ଧି ତଥା ଚରିତ୍ରକୁ ଉପଯୁକ୍ତ ସମ୍ମାନ ଦିଆଯାଉଛି ଏବଂ ବେଳେବେଳେ ଯେଉଁ ଦୁଃଖ ତାଙ୍କ ମନକୁ ଆସେ ଯେ ହାକିମଟିଏ ନ ହୋଇ ୟୁନିର୍ଭର୍ସିଟିର

ପ୍ରଫେସର ହୋଇଥିଲେ ବୋଧହୁଏ ଭଲ ହୋଇଥାଆନ୍ତା, ତା'ର ଅବକାଶ ରହିବ ନାହିଁ ଆଉ । ଅପରନ୍ତୁ ସେ ଦେଖେଇ ଦେଇ ପାରିବେ ଯେ ଏଇ ଉତ୍କୃଷ୍ଟ 'ପୋଥିବାଇଗଣଙ୍କୁ' କେମିତି କାର୍ଯ୍ୟକାରୀ କରିହେବ 'ବାରିବାଇଗଣ' ଭାବରେ । କେତେ ଜଣଙ୍କୁ ମିଳିଥାଏ ଏଭଳି ସୁଯୋଗ ? ଥ୍ୟାଂକ୍ ୟୁ ସାର୍, ଥ୍ୟାଂକ୍ ୟୁ....

ଏବଂ ଏଭଳି ବୀରବିକ୍ରମରେ ତାଙ୍କ ନୂଆ କାମରେ ଲାଗି ପଡ଼ିଛନ୍ତି ଡଃ ସେନ୍, ଯେ ମନେହେବ ତାଙ୍କ ସାମୟିକ ସେକ୍ସ-ଭୋକ ମଧ ଉଭେଇ ଗଲାଣି । ସ୍ପେଶାଲ୍ ରିଫର୍ମ୍ସ କମିଶନର୍‌ଙ୍କ ପାଇଁ ଯେଉଁ ବଙ୍ଗଳା ମିଳିଛି ତାଙ୍କୁ, ତା'ର ପ୍ରଶସ୍ତ ବଗିଚାରେ ଅବଶ୍ୟ ଅନେକ ଫୁଲ ଫୁଟାଇବାର ଆନନ୍ଦ ମିଳୁଛି ତାଙ୍କୁ, ସତେଜ ସୁନ୍ଦର ନାଲିଗୋଲାପ ସମେତ, କିନ୍ତୁ ସେ କେଉଁ ଗୁଲ୍‌ସନ୍‌ର ଅଭାବ ଅନୁଭବ କରୁ ନାହାନ୍ତି । ସେ ନିଜେ ସଚେତନ ହୋଇ ଉଠନ୍ତି ବେଳେ ବେଳେ ସେ ବିଷୟରେ ଏବଂ ତାଙ୍କୁ ମଜା ଲାଗେ । ନା, କେବଳ ମଜା ଲାଗେ ନୁହେଁ, ଏକ ମହାର୍ଘ ସାର୍ଥକତାର ଅନୁଭବ ଆସେ ତାଙ୍କ ମନରେ । ସେଇ ମନସ୍ତତ୍ତ୍ୱ ବିଜ୍ଞାନର ଖିଅ ଧରି । କୁହନ୍ତି ହଁ, ଯୌନ ପ୍ରବୃତ୍ତିର ତାଡ଼ନାକୁ ସହଜେ ଆଡ଼େଇ ଦେଇ ହେବ ନାହିଁ । ମୁଁ ମାନୁଛି ସେ କଥା । କିନ୍ତୁ ଇଏ ମଧ କ'ଣ ସତ ନୁହେଁ, ଯାହାକୁ ଫ୍ରଏଡ୍‌ବାଦୀମାନେ ଅସ୍ୱୀକାର କରି ନାହାନ୍ତି, ଯେ ସେଇ ପ୍ରବୃତ୍ତିର ଉତ୍ତୁଙ୍ଗ ସୁଅକୁ କେଉଁ ସୃଜନାତ୍ମକ ଭିନ୍ନ କିନାରାରେ ଛାଡ଼ି ଦେଇହେବ ଏବଂ ତାକୁ ଏକ ମହତ୍ତର ସୁଖ ବୋଲି କୁହାଯାଇପାରେ ? ଅର୍ଥାତ୍ ସେକ୍ସକୁ କ'ଣ ସବ୍‌ଲିମେଟ୍ (sublimate) କରି ହେବ ନାହିଁ ? ଅତି ମହାର୍ଘ ସେଇ ସାର୍ଥକତା, ଯାହା ନିବେଦିତ କର୍ମଯୋଗୀମାନଙ୍କୁ ମିଳିଥାଏ । ତେଣୁ କିଏ କହିବ ଯେ ସେଭଳି ଏକ କିନାରା ମିଳି ନାହିଁ ଡଃ ସେନ୍‌କୁ, ଯେଉଁଥିରେ ସେ ତା'ର ସେକ୍ସପ୍ରବୃତ୍ତିକୁ ଶାନ୍ତ ସମାହିତ କରିପାରିଛି ?

ଏହି ଭାବରେ ସେ କେବଳ ଅଭିଆଡ଼ା ନୁହେଁ, ମଧ ପୂରାପୂରି ବ୍ରହ୍ମଚାରୀ ହୋଇ ପଡ଼ିଛନ୍ତି ବୋଲି ମନେହୁଏ, ଏଇ ଅତିବିଶିଷ୍ଟ କର୍ମରେ ଯୋଗ ଦେଲା ଦିନଠୁଁ । ହେଲେ ସେ ଆମୋଦିତ ହୁଅନ୍ତି ଯେ ତଥାପି ତାଙ୍କ ଉପରେ ପଡୁଛନ୍ତି କେତେକ ନଛୋଡ଼ବନ୍ଧା ଗୁଲ୍‌ସନ୍, ନୀଲୁ, ମିଲୁ, ଚନ୍ଦ୍ରିକା ଓଗେର । ହେଲେ ସେ ସେମାନଙ୍କୁ ପ୍ରଶ୍ରୟ ଦିଅନ୍ତି ନାହିଁ, ମୃଦୁହାସର ଅଙ୍ଗୀକାର ଦେବାଛଡ଼ା । ଯଥାସମୟରେ ଫେରିଆସନ୍ତି ତାଙ୍କ ବଙ୍ଗଳାର ଅଫିସ୍ କମରାକୁ, ମନେ ପଡ଼ିଯାଇଥିବା କେଉଁ ଏକ ନୂଆ ଧରଣର ଦୁର୍ନୀତି ଓ ତା'ର ପ୍ରତିକାର ବିଷୟରେ କିଛି ଲେଖିବାପାଇଁ ।

ଆପଣା ଅନୁଭୂତିରୁ ଉଦ୍‌ଭୂତ ବିଭିନ୍ନ ଧରଣର ଦୁର୍ନୀତିକୁ ମନେପକାଇ - ଅର୍ଥାତ୍ ଯେଉଁପ୍ରକାର ଦୁର୍ନୀତି ବିଷୟରେ ସେ ଶୁଣିଛନ୍ତି ବିଶ୍ୱସ୍ତ ସୂତ୍ରରୁ, ଅନୁମାନ କରିଛନ୍ତି ଆନୁଷଙ୍ଗିକ ଘଟଣାରୁ, ଅଥବା ସେ ନିଜେ ଯାହାର ଶିକାର ହୋଇ ପାରିଥାଆନ୍ତେ ଯଦି

ସେ ହାରାହାରି ଅନ୍ୟମାନଙ୍କ ପରି ହୋଇଥାଆନ୍ତେ, - ସେ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହେଲେ । ଦୁର୍ନୀତିର ମୂଳ କେବଳ ଟଙ୍କାସୁନାର ପ୍ରଲୋଭନ ନୁହେଁ । ତା'ର ସ୍ତର ନିକୃଷ୍ଟ ଏବଂ ତା'ର ପ୍ରାଦୁର୍ଭାବ ସୀମିତ । ଚେଷ୍ଟା କଲେ ସେମାନଙ୍କୁ ସହଜେ ଧରି ହେବ । ଆଇନ୍‌କାନୁନ୍‌ର ବିଶେଷ ତ୍ରୁଟି ନାହିଁ ସେଦିଗରେ । କିନ୍ତୁ ଯେଉଁ ଦୁର୍ନୀତି ବ୍ୟାପକ ଏବଂ ଯାହାକୁ ଅନେକେ ଦୁର୍ନୀତି ବୋଲି ଭାବନ୍ତି ନାହିଁ, ଅପରନ୍ତୁ ପାରିବାରିକ, ସାମାଜିକ କର୍ତ୍ତବ୍ୟ ବୋଲି ମନେ କରନ୍ତି, ହେଲେ ତାହାରି ଯୋଗୁଁ ଶହ ଶହ ଅଯୋଗ୍ୟ ଲୋକ ଅଛନ୍ତି ବିଭିନ୍ନ ପଦବୀରେ ଏବଂ ସେଇଥିପାଇଁ ପ୍ରଶାସନ ରସାତଳକୁ ଗଲାଣି, ପ୍ରଗତି ପଛେଇ ଯାଉଛି, ତା' ହେଉଛି ଏଇ -

କୁହାବୋଲା-ଧରାଧରିର ରାଜତ୍ୱ ଏବଂ ତା'ର ମୂଳାଧାର ଷଡ଼୍‌ରିପୁର ଅନ୍ତର୍ଗତ 'ଲୋଭ' ନୁହେଁ । ପ୍ରିୟାପ୍ରୀତି ।

ପ୍ରିୟାପ୍ରୀତି । ଅଧିକାଂଶ କ୍ଷେତ୍ରରେ ତାହା 'କାମ' ନାମକ ରିପୁର ଭିଆଣ ନୁହେଁ । ତମେ କେଉଁ ଗୋଟିଏ ପ୍ରାର୍ଥୀର ତଥାକଥିତ ଉପକାର କରିବାକୁ ଚାହଁ, ତା'ର ଯୋଗ୍ୟତା ଉପରେ ବିଶେଷ ଗୁରୁତ୍ୱ ନ ଦେଇ ଏବଂ ଅଧିକାରୀ ଜଣକ ମଧ ତମ ଉପରୋଧ ରକ୍ଷା ନ କରି ରହିପାରେ ନାହିଁ, କାରଣ ତମେ ସମସ୍ତେ ସଂପ୍ରୀତିର ବନ୍ଧନରେ ବନ୍ଧା । ପରିବାର, ତହୁଁ ବିରାଦରି, ବନ୍ଧୁବାନ୍ଧବ ଓଗେର । ନିଜ ପରିବାର କ୍ଷେତ୍ରରେ ହୁଏତ କିଛି ମୁଖଲଜ୍ଜା ରହିଥାଏ, ତେଣୁ ତମ ସ୍ୱାର୍ଥକୁ ଘୋଡ଼େଇବାକୁ ପଡ଼େ ଦେଶପ୍ରେମ କି ଜାତିପ୍ରେମର ଦ୍ୱାହି ଦେଇ । କିନ୍ତୁ ଅନ୍ୟକ୍ଷେତ୍ରରେ ତମେ ବିନାଦ୍ୱିଧାରେ କହିପାର ଟେବୁଲ୍‌ର ଆରପାଖରେ ବସିଥିବା ବନ୍ଧୁକୁ - "ଭାଇ, ମୁଁ କ'ଣ କହୁଥିଲି କି, ଏଇ ଲୋକଟିର ନାଆଁ ମନେ ରଖିଥିବ । ସିଏ ହେଉଛି ଆମ..." ବୁଝିବାରେ ବିଳମ୍ବ ହୁଏ ନାହିଁ ଯେ ସେ ଆମ ବିରାଦରିର ଲୋକ, ଆମ ପିଲାଦିନର ସାଙ୍ଗ କିମ୍ବା ସେଇ ସାଙ୍ଗର ବେକାର ସାନଭାଇ, ଆମ ନକୁଳ ମାଷ୍ଟ୍ରେ (ମନେ ଅଛି ନା ?), ତାଙ୍କରି ନାତି, ଅବା ସେଇ ଉପକାରୀ ବନ୍ଧୁର ପୁଅ ଯେ ଆମ ମିସେସ୍‌ମାନଙ୍କୁ ଅନେକ ସାହାଯ୍ୟ କରିଛି ଉଚିତ ମୂଲ୍ୟରେ ଶାଢ଼ି ଗହଣା କିଣେଇଦେବାପାଇଁ, ଆମ ପୁଅପାଇଁ ଟିଉସନ୍ ମାଷ୍ଟରଟିଏ ଯୋଗାଡ଼ କରି ଦେବାରେ, ଇତ୍ୟାଦି । ପ୍ରିୟାପ୍ରୀତି । ଯାହା ସଂପ୍ରୀତିର ଅପଭ୍ରଂଶ ।

ଆଉ ଏଇ ସଂପ୍ରୀତି କେଉଁଠୁ ଆସିଛି ? ସମ୍ପର୍କ ।

ହଁ, କୁହାବୋଲା-ଧରାଧରି ନାମକ ବ୍ୟାପକ ଦୁର୍ନୀତିକୁ ଟେକି ଧରିଛି ଏଇ ସମ୍ପର୍କର ବାସୁକି ।

ଏଇଠି ଡକ୍ଟର୍ ସେନ୍ ଯେଉଁ ସ୍ୱସ୍ତିଭାବର ଉଚ୍ଚାରଣ କଲେ, ତାହା ନିଶବ୍ଦ ନ ଥିଲା । ହୁଏତ ତା'କୁ କିଏ ଶୁଣି ପାରିଥାଆନ୍ତା, ଦରଜା ସେପାଖରେ ଥିଲେ । ଓଃ ! ମୁଁ

ରକ୍ଷା ପାଇ ଯାଇଛି ସେଇ ସମ୍ପର୍କର ଜାଲରୁ । ମୁଁ ତାକୁ ଆସିବାକୁ ଦେଇ ନାହିଁ ମୋ ଜୀବନରେ । ଖାଲି ବାହାସାହା ହୋଇ ଘର କରି ନାହିଁ ବୋଲି ନୁହେଁ । ମୋର ବ୍ୟକ୍ତିତ୍ୱ ଭିନ୍ନ । ଯାହା ଟାଣି ହୋଇ ଯାଏ ନାହିଁ ଆଉ କାହା ପାଖକୁ, ଯେ କୌଣସି କାରଣରୁ । ମୁଁ ମୋ ଇଲାକାର ଲୋକମାନଙ୍କ ସାଙ୍ଗରେ ମିଳାମିଶା କରିଛି, ତାଙ୍କର ଅଭାବ ଅସୁବିଧା ବୁଝିଛି ଏବଂ ତାକୁ ଦୂର କରିବାକୁ ଚେଷ୍ଟା କରିଛି । ତାହା ମୋର ବୃତ୍ତିଗତ କର୍ତ୍ତବ୍ୟ । ସହକର୍ମୀମାନଙ୍କ ଗହଣରେ ଖୁସିଗପ ହୋଇଛି । ଘରୋଇ ଆସରରେ ତଥା ପାର୍ଟିମାନଙ୍କରେ । ଉପକାରୀମାନଙ୍କୁ ବାରମ୍ବାର ଏବଂ ବସେଇ ବସେଇ 'ଥ୍ୟାଂକ୍ସ' ବୋଲି କହିଛି । କିନ୍ତୁ କେଉଁଠି ହେଲେ ସେଇ ସମ୍ପର୍କକୁ ଉଷ୍ମ ହେବାକୁ ଦେଇ ନାହିଁ, ଯାହାକୁ ସଂପ୍ରୀତି ବୋଲି କୁହାଯିବ । ତେଣୁ ମୁଁ ତ କେବେହେଲେ କୁହାବୋଲା-ଧରାଧରି କରି ନାହିଁ ଆଉ କାହାପାଇଁ, ମଧ୍ୟ କାହାରି ସାହସ ହୋଇ ନାହିଁ ମୋତେ ସେହି ଧରଣର କୌଣସି ଅନୁରୋଧ କରିବା ଲାଗି । ସମସ୍ତେ ଜାଣନ୍ତି ମୁଁ କେମିତିକା ଲୋକ ।

କିନ୍ତୁ ସେନ୍‌ସାହେବ, ଆପଣଙ୍କର ଯେଉଁ ଯୌନ ସମ୍ପର୍କ ଥିଲା ଗୁଲ୍‌ସନ୍‌ମାନଙ୍କ ସାଙ୍ଗରେ, ସେଥିରେ ବି କ'ଣ ଉଷ୍ମ ନ ଥିଲା ବୋଲି କହିହେବ ? ଅବଶ୍ୟ କହିହେବ ବୋଲି ଗୋଟାଏ ଠୋସ୍ ଉତ୍ତର ଛାଡ଼ି ଦିଅନ୍ତି ଡଃ ସେନ୍, ଯଦି ସେହି ପ୍ରଶ୍ନ ଉଠେ ବେଳେବେଳେ ତାଙ୍କ ମନରେ । କୁହନ୍ତି, ଲେଖିନିଅ ମୋଠୁଁ । ସେଇ ସେକ୍ସ ଉପଭୋଗରେ ଭାବଗତ ଉଷ୍ମ ଟିକିଏ ବୋଲି ନ ଥିଲା ଯାହା ସଂପ୍ରୀତି ଆଡ଼କୁ ବାଟ କଢ଼େଇ ନେଇପାରେ । ନୋ ସାର୍ ! ଏନିୱେ ପ୍ରବୃତ୍ତିଟାକୁ ବି ମୁଁ କେମିତି ହଜମ କରି ସାରିଲିଣି, ତା' ଦେଖି ପାରୁଥିବ । ଡଃ ସେନ୍‌ଙ୍କର କୌଣସି ଅସୁବିଧା ହେଲା ନାହିଁ ପ୍ରଶ୍ନଟାକୁ ଆସୁ ନ ଆସୁଣୁ ଘଉଡ଼େଇ ଦେବାଲାଗି ।

ତେଣୁ ଅସଲ କଥା ହେଲା ବ୍ୟକ୍ତିତ୍ୱ । ମୁଁ କେମିତି ଭଲା ତା'ର ଗୁଣ ଗାଇ ପାରିବି ମୋ ରିପୋର୍ଟରେ, ଏକ-ଦୁଇ-ତିନି କରି ? କେମିତି ଭଲା ଏଇ ସୂଚନା ଦେବି ମୁଖ୍ୟମନ୍ତ୍ରୀଙ୍କୁ, ଯେ ସର୍ବୋପରି ସବୁ ସରକାରୀ ଚାକିରିଆଙ୍କର ଆଦର୍ଶ ହେବା ଉଚିତ ଭବଦୀୟ ଡଃ ସେନ୍ ?

କିନ୍ତୁ ଡଃ ସେନ୍ ହାରିଗଲେ ନାହିଁ । ନାନାଦି ନୀତିନୀୟମ ଓ ଆଇନ୍‌କାନୁନ୍‌ର ସଂଶୋଧନ ଏବଂ ସଂପ୍ରସାରଣର ସୁପାରିସ ପରେ ସେ ହାତ ଦେଲେ ସରକାରୀ କର୍ମଚାରୀଙ୍କ ଆଚରଣ ବିଧି ବୋଲାଉଥିବା ନିୟମାବଳୀ ଉପରେ । ଏଇଆକୁ ସଂପ୍ରସାରିତ କରିବାକୁ ପଡ଼ିବ, ନାନାଦି ଉଦାହରଣ ଖଞ୍ଜିଦେବାକୁ ପଡ଼ିବ, ଯେମିତିକି ବ୍ୟୁରୋକ୍ରାଟ୍‌ର ଆବଶ୍ୟକ ଲୋକପ୍ରିୟତା କେବେହେଲେ ଉଷ୍ମ ହେବ ନାହିଁ, ସଂପ୍ରୀତି ଆଡ଼କୁ ଗତି କରିବ ନାହିଁ । ସେଥିର ଆଶଙ୍କା ରହିବ ନାହିଁ । ତଥାପି ଯେ ସେମାନେ ଗୋଟିଏ ଗୋଟିଏ ଡକ୍ଟର୍ ସେନ୍ ହୋଇପାରିବେ ସେଭଳି ଆଶା କରିବା ବୃଥା । କିନ୍ତୁ ସେହିପ୍ରକାର ଆଦର୍ଶର

ଅନୁଗାମୀ ହୋଇପାରିବେ ନାହିଁ ? ଟୀକାଟୀପ୍ପଣୀସମ୍ବଳିତ ଏଇ ସଂଶୋଧିତ ଓ ପରିବର୍ଦ୍ଧିତ ସଂହିତା ତାଙ୍କୁ ସେ ଦିଗରେ ସାହାଯ୍ୟ କରିବ ନିଶ୍ଚୟ ।

ହେଲେ ଏଇ ସମୟରେ ଗୋଟିଏ ଦୁଃଖଦ ଘଟଣା ଘଟିବାକୁ ଥିଲା । ଡଃ ସେନ୍‌ଙ୍କ ବାପା ନରୋତ୍ତମ ସେନ୍ ଚାଲିଗଲେ ଏବଂ ଡଃ ସେନ୍‌ଙ୍କ ଆଖିରୁ ଲୁହ ଝରିଥିଲା । ସେଇଠୁଁ ସେ ସ୍ୱୀକାର କଲେ ଏବଂ ତାଙ୍କୁ ଭଲ ଲାଗିଲା ସ୍ୱୀକାର କରିବାରେ ଯେ ସେ କେଉଁ ସମ୍ପର୍କର ପାରରେ ପଡ଼ି ନାହାଁନ୍ତି ବୋଲି କହିଲେ ଭୁଲ୍ ହେବ । କାରଣ ଏଇ ଲୋକଟି ସାଙ୍ଗରେ ତାଙ୍କର ଯେଉଁ ସମ୍ପର୍କ ଥିଲା, ସେଥିରେ ଥିଲା ରାଶି ରାଶି ଉଷ୍ଣତା । ମାଆ ଚାଲିଗଲା ବେଳେ ସେ ତ ପିଲା ଥିଲେ, ମାଆ ସାଙ୍ଗରେ ବାନ୍ଧି ହୋଇ ରହିଥିଲେ, ଟିନ୍‌ଏଜର୍ ପୁଅଠାରୁ ଯାହା ଆଶା କରାଯାଏ, ସେ ଯେତେ ପାଠୁଆ ହେଉ ପଛେ, ତେଣୁ ସେ ଭୋ ଭୋ ହୋଇ କାନ୍ଦିଥିଲେ । କିନ୍ତୁ ସ୍ୱଗୁଣକୁ ନେଇ ବଡ଼ ହେଲା ପରେ ଏଇ ପ୍ରଥମଥର ବୋଧହୁଏ ଦି' ଟୋପା ଲୁହ ଝରି ପଡ଼ିଛି ତାଙ୍କ ଆଖିରୁ । ହେଲେ ସେ ସେଥିପାଇଁ ଆଦୌ ଦୁଃଖିତ ନୁହନ୍ତି ।

...ବାବା, ଚାଲିଗଲ ଏମିତି ? ଏଣିକି ମୁଁ କାହାକୁ ମୋ ମନକଥା ଶୁଣେଇବି, ଆମର ଉଚାଙ୍ଗ ଚର୍ଚ୍ଚା କରିଆରେ, ରାଗିଲା ପରି ହେଉ ଅବା ଦୁଃଖରେ, ଯାହା ଆଉ କାହାକୁ କହିହେବ ନାହିଁ ? ଯେ ଶୁଣନ୍ତୁ ବାବା, ଆଜି କ'ଣ ହେଲା - ଏଇ ନୂଆ ମନ୍ତ୍ରୀଜଣକ ମୋଟେ ବୁଝିବାକୁ ନାହିଁ ଯେ ଖାଲି କେନ୍ଦ୍ରସରକାର ସାଙ୍ଗରେ ଲଢ଼େଇ କଲେ ଆମ ଦୁଃଖ ଘୁଞ୍ଚିବ ନାହିଁ, ଆଉ ଆମ ଆୟବ୍ୟୟର ଖୁଣ୍ଟିନାଣ୍ଟି ତଦାରଖ କରିବା କାମକୁ 'ଅଯଥାରେ ସମୟ ନଷ୍ଟ' ବୋଲି କୁହାଯାଇ ନ ପାରେ... ବାବା ଶୁଣନ୍ତୁ ଗୋଟାଏ ମଜାକଥା । ଆଜି ଯେତେବେଳେ ମୁଁ ଭୁଲ୍‌ରେ ପଶିଗଲି ରାଓ ସାହେବଙ୍କ କମରାକୁ, ମୁଁ କ'ଣ ଦେଖିଲି ଜାଣନ୍ତି ? ସେଠି ତାସ୍ ଖେଳ ଚାଲିଛି ! ଯଦିଓ ଲଞ୍ଚ୍‌ଛୁଟିକୁ ଆହୁରି ଘଣ୍ଟାଏ ବାକି । ହେଲେ ସେମାନେ ହସୁଛନ୍ତି ମୋ ଆଡ଼କୁ ଚାହିଁ । ସତେକି ମୁଁ ଧନ୍ୟ ହୋଇଗଲି ଏଭଳି ଏକ ଅପୂର୍ବ ଦୃଶ୍ୟ ଦେଖି । ବାବା, ଶାସନକଳ କ'ଣ ଏତେ ହୁଗୁଳା ଥିଲା, ବ୍ରିଟିଶ୍ ଅମଳରେ ? ଇତ୍ୟାଦି ।

ବାବା ମନଦେଇ ଶୁଣନ୍ତି ତାଙ୍କ ସୁଯୋଗ୍ୟ ନାଆଁକରା ପୁଅ ଯାହା କହୁଛି ତାଙ୍କୁ, ଏବଂ ଦି'ପଦ ଯୋଡ଼ି ଦିଅନ୍ତି ତାଙ୍କ ନିଜ ଅନୁଭୂତିରୁ ଏବଂ ଶେଷକୁ ଗୋଟାଏ ଆଶ୍ୱାସନା, ବ୍ୟକ୍ତ ହେଉ ବା ଅବ୍ୟକ୍ତ, ଯେ ସବୁର୍ କର, ସବୁ ଠିକ୍ ହୋଇଯିବ । ହେବା ଉଚିତ । କିନ୍ତୁ ରୋଗଶଯ୍ୟାରେ ପଡ଼ି ମରିବାର କିଛି ଦିନ ପୂର୍ବରୁ ସେ ପୁଅକୁ ତାଙ୍କ ପାଖକୁ ଡାକି ଆଣିଥିଲେ ଏବଂ ଖାଲି ତା' ହାତକୁ ଚିପି ଧରିଥିଲେ । ମନେହେଲା କହୁଛନ୍ତି, - ''ବାବ୍‌ଲୁ, ଏଣକି ତୁ ପୂରାପୂରି ଏକୁଟିଆ ପଡ଼ିଯିବୁ, ନୁହେଁ ? ନିଜକୁ ନିଜେ । ଆଇ ଆମ୍ ସରି !'' କିନ୍ତୁ ଡଃ ସେନ୍ ତାଙ୍କୁ ଅବ୍ୟକ୍ତ ଆଶ୍ୱାସନା ଦେଇଥିଲେ - ''ହଁ ବାବା, ମୁଁ ଜାଣିଛି

ଯେକଥା । କିନ୍ତୁ ତମେ ବି ଜାଣିଛ ଯେ ପୁଅର ସ୍ୱଗୁଣ, ତା'ର କରାମତି । କେମିତି ନିଜକୁ ନିଜେ ହୋଇ ସେ ଚାଲି ପାରିଛି ରାଜପଥରେ, ଯାବତୀୟ ଗହଳି ଓ ଗଣ୍ଡଗୋଳକୁ ପରୁଆ ନ କରି । ଆଉ ମୁଣ୍ଡ ଟେକି, ଛାତି ଫୁଲେଇ, ଲମ୍ବା ଲମ୍ବା ପାହୁଣ୍ଡ ପକେଇ । ସାକ୍ଷାତ୍ ରାଜାପୁଅଟାଏ ! ବ୍ୟସ୍ତ ହୁଅ ନାହିଁ ବାବା, ମୁଁ ପାରିବି । ଖାଲି ଏତିକି ଯେ ତମକୁ ଦି'ପଦ କହି ହାଲୁକା ହୋଇ ଯିବାରେ ଯେଉଁ ସୁଖ ମିଳୁଥିଲା ମୋତେ, ସେତିକି ମିଳିବ ନାହିଁ ଆଉ ।''

ଆଖିରୁ ଦି'ଟୋପା ଲୁହ ଝରିଲା ପରେ ମଧ୍ୟ ସେ ଏଇଆ କହିଥିଲେ ମନକୁ ମନ । ମୁଁ ପାରିବି । ସେ ବିଶ୍ୱାସ ମୋର ଅଛି ।

କିନ୍ତୁ ସେ ଭାବି ନ ଥିଲେ ଯେ ଏତେ ଶୀଘ୍ର ସେଇ ଅଭାବର ସମ୍ମୁଖୀନ ହେବାକୁ ପଡ଼ିବ । ତାଙ୍କ ମରିବାର ଦି'ମାସ ନ ଯାଉଣୁ ।

ସେଦିନର କଥା । ମୁଖ୍ୟମନ୍ତ୍ରୀ ନୀରବରେ ହସୁଥିଲେ । କିନ୍ତୁ ଡଃ ସେନ୍‌ଙ୍କର ମନେହେଲା ସେଥିରେ ଥିଲା ଗୋଟାଏ ମଉଜିଆ ଭାବ । ସତେକି ତାଙ୍କୁ ଏକାଧାରରେ ସେନ୍‌ସାହେବଙ୍କ ସୁଚିନ୍ତିତ ସନ୍ଦର୍ଭ ଏବଂ ତାଙ୍କ ବିଶ୍ୱସ୍ତ ରାଜନୈତିକ ସଚିବର ଖଣ୍ଡିକୁହାକୁ ବୁଝିବାର ତଥା ପସନ୍ଦ କରିବାର ଆନନ୍ଦ ମିଳୁଛି । କହୁଛନ୍ତି,

''ଖାରା କଥା ଲେଖିଛନ୍ତି ଆପଣ, ଡଃ ସେନ୍ । ଏଇଆ ହୁଏ । ଏକ୍‌ଜାକ୍‌ଟିଲି ଏମିତି । କ'ଣ କହିଲେଟି ? ସଂପ୍ରୀତି ! ଚମତ୍କାର ଶବ୍ଦଟିଏ । କିନ୍ତୁ କଥା ହେଉଛି ଯେ ଏତେଗୁଡ଼ାଏ ଡିଟେଲ୍‌ସ ଦେବା କ'ଣ ଠିକ୍ ହେଉଛି ? ପଢ଼ିଲାବାଲା ଭାବିବେ ନାହିଁ ତ, ଯେ ତାଙ୍କ କମନ୍‌ସେନ୍ସକୁ ଅପମାନ ଦିଆ ଯାଉଛି ? ତା'ଛଡ଼ା ପ୍ରାକ୍ଟିକାଲ୍ ଦୃଷ୍ଟିରୁ ... ।'' ତାଙ୍କ ମନ୍ଦମଧୁର ହସ ପ୍ରସାରିତ ହେଲା । ସତେକି ବିପ୍ଳବୀ ମୁଖ୍ୟମନ୍ତ୍ରୀ ବେରସିକ ନୁହଁନ୍ତି । ସ୍ପେଶାଲ୍ ରିଫର୍ମ୍‌ସ କମିଶନର୍ ସାହେବଙ୍କୁ ସାବାସ୍ ଦେଲେ ମଧ୍ୟ ସେ ବୁଝୁଛନ୍ତି ତାଙ୍କ ରାଜନୈତିକ ସଚିବ ମହାଶୟ କ'ଣ କହିବାକୁ ଚାହାଁନ୍ତି । ଯାହା ଯୁଗୋପଯୋଗୀ ବୋଲି ମାନିବାକୁ ପଡ଼ିବ ।

ସେଇଠୁଁ ବିଚକ୍ଷଣ ସଚିବ ମହାଶୟ ବୁଝେଇ ବସିଲେ ସେ କ'ଣ କହିବାକୁ ଚାହାନ୍ତି । କହିଲେ, ''ଧରନ୍ତୁ ଆପଣ ଏଇ ଯେଉଁ ଲେଖିଛନ୍ତି ଯେ ହାକିମହୁକୁମାଙ୍କର ଆଚରଣ ଏଭଳି ହେବା ଉଚିତ ଯେ ଲୋକେ ଜାଣିବେ ସେ ଜଣେ ଦରଦୀ ହାକିମ, ହେଲେ କଦାପି ତମର ବନ୍ଧୁ ହୋଇପାରିବେ ନାହିଁ, ତେଣୁ ଧରାଧରି କୁହାବୋଲାର କୌଣସି କୌଶଳ ଚଳିବ ନାହିଁ ତାଙ୍କ ପାଖରେ । ଇଏ ଅବଶ୍ୟ ଗୋଟିଏ ସାରକଥା । କିନ୍ତୁ ଆପଣଙ୍କ ସହକର୍ମୀମାନଙ୍କୁ କ'ଣ ଚାମୁଚରେ କ୍ଷୀର ପିଆଇବାକୁ ପଡ଼ିବ ? କ'ଣ ନିହାତି କହିବା ଦରକାର ଯେ ଟୁର୍‌ରେ ଗଲେ ଜଣେ କଦାପି କାହାରି ଅତିଥି ହେବ ନାହିଁ, ତଣ୍ଟି ଶୁଖିଗଲେ ହୁଏତ ପାଣି ଗିଲାସେ ପିଇପାର, କିନ୍ତୁ ପଣା ସର୍‌ବତ୍ ନୁହେଁ ? ନୂଆବର୍ଷରେ ସେମାନଙ୍କ ଶୁଭେଚ୍ଛା ଗ୍ରହଣ କରିପାର, କିନ୍ତୁ ଡାଏରୀ-କ୍ୟାଲେଣ୍ଡର୍ ନୁହେଁ, ଇତ୍ୟାଦି ?''

ମୁଖ୍ୟମନ୍ତ୍ରୀ କହି ଉଠିଲେ ହଠାତ୍, ଏହି ସମୟରେ ତାଙ୍କ ହସକୁ ପୋଛିନେଇ - "ନାଇଁ ରାଏବାବୁ (ସଚିବଙ୍କ ସାଙ୍ଗିଆ ରାଏ), ସେନ୍ ସାହେବଙ୍କ ହାତକୁ ଅଟକେଇବା ଉଚିତ ହେବ ନାହିଁ । ସେ ଲେଖନ୍ତୁ ଯାହା ଲେଖିବାକୁ ଚାହାନ୍ତି ତାଙ୍କ ନିଜ ଭାବରେ । ମୁଁ ଚାହେ ନାହିଁ ସେ ନିଜକୁ ସଂକୁଚିତ କରିଦେବେ । ରିପୋର୍ଟ୍‌ଟା ବେସୁରା ହୋଇଯିବ ତା'ହେଲେ । ଯେତେହେଲେ ସେ ଜଣେ ଢୁଙ୍ଗ ବ୍ୟୁରୋକ୍ରାଟ୍, ଗଣତାନ୍ତ୍ରିକ ମନ୍ତ୍ରୀ ନୁହଁନ୍ତି, ସେ କୋଉଠୁ ବୁଝିବେ ଆମର ଦୁଃଖ ?"

ସେଇଠୁଁ କହିଲେ ଡଃ ସେନ୍‌ଙ୍କ ଆଡ଼କୁ ଅନାଇ,

"ଲେଖନ୍ତୁ ଆପଣ ଡଃ ସେନ୍, ଲେଖିଯାଆନ୍ତୁ । ଆପଣ ଯାହା ଠିକ୍ ଭାବୁଛନ୍ତି ଲେଖନ୍ତୁ । ମୋ ମତରେ ଛଅମାସ ଭିତରେ ସାରି ଦିଅନ୍ତୁ ନାହିଁ, ଆହୁରି କିଛି ଦିନ ସମୟ ନିଅନ୍ତୁ । ଆପଣଙ୍କ ସବୁ ସୁପାରିସ ହୁଏତ ଗ୍ରହଣ କରିହେବ ନାହିଁ ଜଣେ ମନ୍ତ୍ରୀ ହିସାବରେ, କିନ୍ତୁ ସେଥିରେ ଯାଏଆସେ ନାହିଁ । ଆପଣ ଲେଖନ୍ତୁ, ଲେଖିଯାଆନ୍ତୁ, ଯାହା କେବଳ ଆପଣଙ୍କ କଲମରୁ ବାହାରି ପାରିବ ।"

ବିଳମ୍ବରେ ହେଉ ପଛେ ଚେତା ହେଲା ଡଃ ସେନ୍‌ଙ୍କର ଯେ ତାଙ୍କୁ ପ୍ରଶ୍ରୟ ଦିଆଯାଉଛି । ଅବାଗିଆ ଲୋକଟାର ନିର୍ଭୀକ, ହେଲେ ପିଲାଳିଆ ମତାମତକୁ ପ୍ରଶ୍ରୟ ଦିଆଯାଉଛି, ତା'ର ସୀମା ଭିତରେ । କିନ୍ତୁ ସରକାର ଯେ ଏଇ ଅଣପ୍ରାକ୍ଟିକାଲ୍ ରିପୋର୍ଟ୍‌କୁ ଗ୍ରହଣ କରିବେ, ତା'ର ଆଶା ସୁଦୂରପରାହତ । ତାଙ୍କୁ ଧନ୍ୟବାଦ ମିଳିବ ଏବଂ ଏଇ ରିପୋର୍ଟ୍‌କୁ ମିଳିବ ଗୋଟିଏ ଥଣ୍ଡା ଅନ୍ଧାରୁଆ ସେଲ୍‌ଫ, ହୁଏତ ଆଉ କେତୋଟି 'ଉଚ୍ଛାଙ୍ଗ' ରିପୋର୍ଟ୍ ସାଙ୍ଗରେ ଏକାଠି ହୋଇ ।

ମୁଖ୍ୟମନ୍ତ୍ରୀ ଏଇ ମିଟିଂଗ୍ ଡାକିଥିଲେ ଏବଂ ସେ ତାଙ୍କ ହାତକୁ ନଚାଇ ନଚାଇ ଏପରି ଭାବରେ କରମର୍ଦ୍ଦନ କଲେ ଡଃ ସେନ୍‌ଙ୍କ ସହିତ, ତାଙ୍କୁ 'ବାଏ !' କହିଲାବେଳେ, ଯେ ମନେହେବ ତାଙ୍କର ଉଦ୍ଦେଶ୍ୟ ସାଧିତ ହୋଇଛି । କିନ୍ତୁ ଯେଉଁ ହସଟିକ ସେ ଫୁଟାଇଥିଲେ ତାଙ୍କ ଓଠରେ, ମୁଖ୍ୟମନ୍ତ୍ରୀଙ୍କ ବିସ୍ତାରିତ ଓଠର ହସକୁ ସ୍ୱୀକାର କଲାପରି, ତାକୁ ତିକ୍ତ ହସ ଛଡ଼ା ଆଉ କିଛି କୁହାଯିବ ନାହିଁ ଏବଂ ସେଇ ସମୟରେ ତାଙ୍କ ମନକୁ ଆସିଲା,

ଘରେ ଯାଇ ବାବାଙ୍କୁ କହିବି ଏଇ ସବୁ କଥା । କେମିତି ଏମାନେ ମୋତେ ଭଣ୍ଡେଇବାକୁ ଚାହାଁନ୍ତି ।

ହେଲେ ତତ୍‌କ୍ଷଣାତ୍ ତାଙ୍କର ମନେପଡ଼ିଗଲା ଯେ ବାବା ନାହାଁନ୍ତି । କେହି ହେଲେ ନାହାଁନ୍ତି ଏହିକ୍ଷଣି ତାଙ୍କ ଦୁନିଆରେ, ଯାହା ଆଗରେ ସେ ମନଖୋଲି କହିପାରିବେ ବି' ପଦ ଏବଂ ଯେଉଁଥିରେ ଖାଲି ନିଜକୁ ହାଲୁକା କଲାପରି ଲାଗିବ ନାହିଁ, ମଧ୍ୟ ମନେହେବ ସେ ତାଙ୍କ ପରାଭବ ଉପରେ ସବାର୍ ହୋଇ ପାରିଛନ୍ତି ।

ଠିକ୍ ଅଛି, ଆଇ ଡୋଣ୍ଟ୍ କେୟାର୍ ! ଡଃ ସେନ୍ କେବେହେଲେ ବଦଳି ନାହିଁ କି ବଦଳିପାରିବ ନାହିଁ । ସେ ତା'ର ସ୍ୱଧର୍ମ କରିଯିବ । ଡଃ ସେନ୍ ଆଗେଇ ଗଲେ ଘରମୁହାଁ ହୋଇ ।

କିନ୍ତୁ ସେଇଦିନଠୁଁ ତାଙ୍କ ରାଜକୀୟ ଠାଣି ଧିମେଇ ଗଲା, ତାଙ୍କ ଅଜାଣତରେ । ମଧ ଏକ ବିଷାଦର ଛାଇ ଦେଖାଦେଲା ତାଙ୍କ ମୁହଁରେ, ବିରାଗର ଭ୍ରମ ଆଣିଦେଇ ଏବଂ ଅନ୍ତତଃ ଜଣେ ତାକୁ କେବଳ ଚିହ୍ନିଲା ନାହିଁ, ସେ ବିଷୟରେ କିଛି କରିବାକୁ ଚାହିଁଲା । ମଧ ପାଦେ ଆଗେଇ ଆସିଲା ।

ସେ ହେଉଛନ୍ତି ଅନ୍ୟତମ ପାର୍ଟି-ରମଣୀ ମିସେସ୍ ନନ୍ଦିତା ଚୌଧୁରୀ । ଲୋକ ମୁଖରେ ମିସେସ୍ ଚୌଧୁରୀ ଜୁନିଅର୍ ।

ତାଙ୍କୁ ମିସେସ୍ ଚୌଧୁରୀ ଜୁନିଅର୍ ବୋଲି କୁହାଯାଏ, ଯେହେତୁ ସେ ସମ୍ପୂର୍ଣ୍ଣ ଭିନ୍ନ ତାଙ୍କ ଆଚରଣରେ, ଆଉ ଜଣେ ମିସେସ୍ ଚୌଧୁରୀଙ୍କଠାରୁ, ଯେ ତାଙ୍କ ଠାରୁ ଅନେକ ସିନିୟର୍ । ଯେ ହୋ' ହୋ' ହୋଇ ହସନ୍ତି ଏବଂ ଅନର୍ଗଳ କଥା କହି ଚାଲିଥାଆନ୍ତି ପାର୍ଟିମାନଙ୍କରେ । କିନ୍ତୁ ଏଇ ଜୁନିଅର୍ ଜଣଙ୍କ ସ୍ୱଳ୍ପଭାଷିଣୀ ଏବଂ କେବେହେଲେ ହୋ' ହୋ' ହୋଇ ହସନ୍ତି ନାହିଁ । ହେଲେ ସାନ ହସଟିମାନ ଛାଡ଼ି ଦିଅନ୍ତି, କୌଣସି 'ହସକଥା' ପଡ଼ିଲାରୁ । ମାନେ ମୁଁ ବି' ଅଛି ତମମାନଙ୍କ ସାଙ୍ଗରେ । କିନ୍ତୁ ଲକ୍ଷ୍ୟ କଲେ ଜଣାଯିବ ଯେ ସେ ତମ କହିବା କଥା ଠାରୁ ତମ କଥା କହିବା ଢଙ୍ଗ୍‌କୁ ହିଁ ବେଶି ଉପଭୋଗ କରୁଛନ୍ତି । ସତେକି ବେଶି ମଜା ସେଥିରେ ! ଖାଲି କେମିତି କଥା କହୁଛ ନୁହେଁ, କେମିତି ତମ ହାତପିନ୍ଧା ଚୁଡ଼ିକୁ ବାରମ୍ବାର ଝଣଝଣ କରୁଛ, ଛାତିର ଲୁଗାକୁ ସଜାଡ଼ି ହେଉଛ ଥରକୁ ଥର, ପାନୀୟ ଗ୍ଲାସ୍‌ରେ କିଭଳି ଚୁମୁକି ଦେଉଛ, ଇତ୍ୟାଦି ।

କିନ୍ତୁ ଦିନେ ସେ ଗୋଟିଏ ଅସାଧାରଣ କାମ କଲେ । ଯେଉଁଥିରୁ ମନେହେବ ଯେ ସେ କେବଳ ଜଣେ ଦେଖଣାହାରୀ ନୁହଁନ୍ତି । ସେ ମଧ ତମର ଉପକାର କରିବାକୁ ଚାହାଁନ୍ତି ଦରକାର ହେଲେ । ଜଣେ ବନ୍ଧୁ ହିସାବରେ । କିନ୍ତୁ ତମେ ଜଣେ ପୁରୁଷ ଏବଂ ପାର୍ଟିରେ ଅଳ୍ପବହୁତ ଚିହ୍ନାପରିଚ ହୋଇଥିଲେ ମଧ ତମେ କେବେଠୁଁ ତାଙ୍କ ବନ୍ଧୁ ହେଲ ବୋଲି ବୁଝି ହେଉ ନାହିଁ । ସେଇଲାଗି ଡଃ ସେନ୍‌ଙ୍କ ମୁହଁରୁ ମହାବିସ୍ମୟସୂଚକ 'ଏଁ' ? !' ଟିଏ ଛଡ଼ା ଆଉ କିଛି ବାହାରିଲା ନାହିଁ, ଯେତେବେଳେ ନନ୍ଦିତା ଚୌଧୁରୀ ଆଗେଇ ଆସିଲେ ତାଙ୍କ ପାଖକୁ, ଗୋଟିଏ ପାର୍ଟିରେ, ଏବଂ ତାଙ୍କୁ ସମ୍ବୋଧିଲେ, ଅନୁଚ୍ଚ ସ୍ୱରରେ । ଏବଂ କହିଲେ ସାମାନ୍ୟରେ ହସି ଦେଇ -

''ଏକ୍ସକିଉଜ୍ ମି, ଡଃ ସେନ୍, ଆପଣ ବୋଧହୁଏ ଥାର୍ଡ୍ ପେଗ୍‌ଟିଏ ନେବାକୁ ଯାଉଛନ୍ତି ଏଇକ୍ଷଣି ?''

'ଏଁ ? !' ଡଃ ସେନ୍ ତାଙ୍କ ସାମାନ୍ୟ ସ୍ୱାଧିକାରଭୁକ୍ତ କାମଟାକୁ ପୂରା କରିପାରିଲେ ନାହିଁ । ବଲବଲ ହୋଇ ଅନେଇଲେ ଭଦ୍ରମହିଳାଙ୍କ ଆଡ଼କୁ । ହଁ, ଇଏ ହେଉଛନ୍ତି ମିସେସ୍ ଚୌଧୁରୀ ଜୁନିଅର୍ । ବ୍ରଜ ଚୌଧୁରୀ ସୁପରିଣ୍ଟେଣ୍ଡେଣ୍ଟ୍ ଇଂଜିନିଅର୍ଙ୍କ ସ୍ତ୍ରୀ । ଅଳ୍ପବହୁତ ଚିହ୍ନା ଅଛି ଦି'ଜଣଙ୍କ ସାଙ୍ଗରେ । କିନ୍ତୁ ତା' ବୋଲି...''

''ଅବଶ୍ୟ ମୋର କୌଣସି ଅଧିକାର ନାହିଁ ଆପଣଙ୍କୁ ଏ ବିଷୟରେ ପ୍ରଶ୍ନ କରିବାରେ (ସାନସୁନ୍ଦର ହସଟିଏ), କିନ୍ତୁ ମୋର ଧାରଣା ଥିଲା ଯେ ଆପଣ ସାଧାରଣତଃ ଗୋଟାଏ ଏବଂ କ୍ୱଚିତ୍ ଦି'ଟା ପେଗ୍ରୁ ବେଶି ପିଅନ୍ତି ନାହିଁ । ମୁଁ କ'ଣ ଭୁଲ୍ କହୁଛି ?''

''ନା, ଆପଣ ଭୁଲ୍ କହୁ ନାହାଁନ୍ତି ।'' ମହାବିସ୍ମୟ ପରେ ଏକ ଅପୂର୍ବ କୃତଜ୍ଞତାର ଭାବ୍ ଆସିଲା ଡଃ ସେନ୍ଙ୍କ ମନରେ । ଯେ ଅନ୍ତତଃ ଜଣେ ଜାଣିଛି ତାଙ୍କର ଏଇ ଅଭ୍ୟାସ ବିଷୟରେ ଏବଂ ସେ ବିନା ଦ୍ୱିଧାରେ କହିପାରୁଛି ତାଙ୍କୁ ଯେ ଆଜି ତା'ର ବ୍ୟତିକ୍ରମ ହେବାକୁ ଯାଉଛି । ସତେକି ସେ ମୋର କେଉଁ ପରମ ଆତ୍ମୀୟା, ଭଉଣୀ, ଭାଉଜ, ମାଆ କିମ୍ବା ସେହିଭଳି ଜଣେ । ଶୁଭାକାଙ୍କ୍ଷିଣୀ ।

''ଆଇ ଆମ୍ ସରି !'' କହି ଡଃ ସେନ୍ ଖାଲି ଗ୍ଲାସ୍କୁ ରଖିଦେଲେ ଟେବୁଲ୍ ଉପରେ ଏବଂ ହୁଇସ୍କି ବୋତଲକୁ ସିଧା କରିଦେଲେ ।

ଆଉ ଗୋଟିଏ ସାନସୁନ୍ଦର ହସ ପ୍ରତିଭାତ ହେଲା ଭଦ୍ରମହିଳାଙ୍କ ଓଠରେ । ସେଇଠୁଁ ସେ ଆଡ଼େଇ ହୋଇ ଗତି କଲେ ଅନ୍ୟ ଆଡ଼କୁ । କଥାଟା ଛିଣ୍ଡିଗଲା ପରି । କିନ୍ତୁ ସେଇଠୁଁ ଆରମ୍ଭ ହେଲା ଆଉ ଗୋଟିଏ ଅପ୍ରତ୍ୟାଶିତ ଘଟଣାର କ୍ରମ ।

କାରଣ ଡଃ ସେନ୍ଙ୍କର ମନେହେଲା ଯେ କଥାଟା ଚଟ୍କିନି ଛିଣ୍ଡିଗଲା । ଅଧାରୁ ରହିଗଲା ଜାଣ ଏବଂ ଏମିତି ହେବାର ନୁହେଁ । ଏଭଳି ଏକ ଭଦ୍ରମହିଳାଙ୍କୁ ଆହୁରି ଭଲ ଭାବରେ ଜାଣିବା ଦରକାର, ଚିହ୍ନିବା ଦରକାର । ବୁଝିବା ଦରକାର ଯେ ସେ କେମିତି ମୋର ବିଷାଦକୁ ଠଉରେଇ ପାରିଲେ ଏବଂ ଭାବିଲେ ଯେ ସେଇଥିପାଇଁ ମୁଁ ଅନୁଚିତ ତୃତୀୟ ପେଗ୍କୁ ହାତ ବଢ଼େଇଛି । ତା'ଛଡ଼ା କେମିତି ସେ ଜାଣିଲେ, ତାଙ୍କୁ କିଏ କହିଲା ଯେ ମୁଁ ଗୋଟିଏ ପେଗ୍ରୁ କେବେହେଲେ ବେଶି ପିଏ ନାହିଁ ମୋର ନିଜସ୍ୱ ନୀତି ହିସାବରେ ? ଅଦ୍ଭୁତ !

ଏବଂ ବାରମ୍ବାର ତାଙ୍କୁ ଦିଶିଗଲା ମିସେସ୍ ଚୌଧୁରୀଙ୍କର ସେଇ ସାନ ସୁନ୍ଦର ହସ । ଯେଉଁଥିରେ ଛଇଳିଗୁଣ ନାହିଁ । କେଉଁ ଯୌନବିହାରର ନିମନ୍ତ୍ରଣ, ଇସାରା ନାହିଁ । ଅପରନ୍ତୁ ଗୋଟାଏ ଆତ୍ମୀୟାସୁଲଭ ରସିକତାର ଭାବ । 'ମୁଁ ଜାଣିଛି ଯେ ଜାଣି**ଛି !' ବୋଲି କହିଲା** ପରି ।

ଇସ୍ ! ଏଭଳି ଗୋଟିଏ ସ୍ତ୍ରୀଲୋକକୁ ଭଲଭାବରେ ଚିହ୍ନିବାକୁ ଚାହିଁବା କ'ଣ ନିତାନ୍ତ ସ୍ୱାଭାବିକ ନୁହେଁ ? କହିବାକୁ ଗଲେ ମୋର କର୍ତ୍ତବ୍ୟ ନୁହେଁ, ନିଜକୁ ବୁଦ୍ଧିବାଦୀ ବୋଲି ମନେ କରୁଥିବା ଜଣେ ମଣିଷର ?

ଏହିପ୍ରକାର ଜିଜ୍ଞାସାର ଆତୁରତା ନେଇ ଡଃ ସେନ୍ ଚେଷ୍ଟା କରି ପୁଣି ଭେଟିଲେ ମିସେସ୍ ଚୌଧୁରୀଙ୍କୁ, ପାର୍ଟି ଭାଙ୍ଗିଲା ପୂର୍ବରୁ । ସେତେବେଳେ ସେ ତାଙ୍କ ସ୍ୱାମୀଙ୍କ ସାଙ୍ଗରେ ଥିଲେ । ଏଣୁତେଣୁ କଥା ହେଲେ ଦି'ଜଣଙ୍କ ସାଙ୍ଗରେ ଏବଂ ବୁଝିଲେ ସେମାନେ କେଉଁଠି ରହନ୍ତି । ସ୍ୱାମୀସ୍ତ୍ରୀ ଦି'ଜଣଯାକ ବେଶ୍ ଖୁସିବାସିଆ ବୋଲି ମନେହେଲା ତାଙ୍କର । ଏପରିକି ସ୍ୱାମୀ ବ୍ରଜବାବୁ ଅବିଳମ୍ବେ ଗୋଟାଏ ନିମନ୍ତ୍ରଣ ଜଣାଇଲେ ତାଙ୍କୁ । କହିଲେ, ''ଆପଣ ତ ମର୍ଣ୍ଣିଂ ୱାକ୍‌ରେ ଯାଆନ୍ତି ସେଆଡ଼କୁ, ମୁଁ ଦେଖିଛି କେତେଥର । ଥରେ କେବେ ଆସୁ ନାହାନ୍ତି ଆମ ଘରକୁ ?'' ଡଃ ସେନ୍ ''ହଉ ଯିବି କେବେ, ଧନ୍ୟବାଦ'' ବୋଲି କହିଲେ, ସହାସ୍ୟ ବଦନରେ । ହେଲେ ନିଜକୁ କହିଲେ, 'କେବେ' ନୁହେଁ, ଯଥାଶୀଘ୍ର । ସତେକି ଜିଜ୍ଞାସାର ମୁନ ଭାଙ୍ଗିଯିବ ନହେଲେ । ତାଙ୍କ ଘର ଫୋନ୍ ନମ୍ବର ମଧ୍ୟ ସେ ଟିପି ରଖିଥିଲେ, ତାଙ୍କଠୁଁ ବିଦା ହେଲା ପୂର୍ବରୁ ।

କିନ୍ତୁ ଡଃ ସେନ୍ କେଉଁ ମର୍ଣ୍ଣିଂ ୱାକ୍‌ର କ୍ରମରେ ପଶିଗଲେ ନାହିଁ ତାଙ୍କ ଘରକୁ, ଗୋଟାଏ ଆନୁଷଙ୍ଗିକ କାମ ସାରିଦେଲା ପରି । ଦି'ଦିନ ଉତ୍ତାରୁ ସେ ସେଠିକି ଗଲେ ଇଭିନିଙ୍ଗ୍ ୱାକ୍‌ର ପରାକାଷ୍ଠା ଦେଖାଇ । ଯଦିଓ ସନ୍ଧ୍ୟାବେଳେ ସେ ସାଧାରଣତଃ କ୍ଲବ୍‌କୁ ଯାଆନ୍ତି, ଟେନିସ୍ ଖେଳିବା ପାଇଁ । ଫୋନ୍‌ରେ ପଚାରିଥିଲେ କିଛି ସମୟ ପୂର୍ବରୁ, ଯେ ଆପଣମାନେ ଘରେ ଥିବେ କି ନାହିଁ । ମିସେସ୍ ଚୌଧୁରୀ ତାଙ୍କୁ ଜଣାଇଲେ ଯେ ଇଂଜିନିୟର୍ ସ୍ୱାମୀ ଟୁର୍‌ରେ ଯାଇଛନ୍ତି, ଆସନ୍ତାକାଲି ଫେରିବେ । କିନ୍ତୁ ତଥାପି ଆପଣ ଆସିପାରନ୍ତି ଆପଣଙ୍କ ଇଚ୍ଛା ହେଲେ । ମୁଁ ଅତିଥିଙ୍କୁ ଅନ୍ତତଃ ଚା' କପେ ଦେଇ ପାରିବି । ଡଃ ସେନ୍‌ଙ୍କର ମନେହେଲା ଯେ ଶୁଭାକାଙ୍କ୍ଷିଣୀଙ୍କର ଭିନ୍ନ ସୁନ୍ଦର ହସ ମଧ୍ୟ ଦିଶି ଯାଉଛି ଫୋନ୍‌ରେ ।

ସେଦିନ ସନ୍ଧ୍ୟାରେ କିଭଳି ଆତିଥ୍ୟର ପର୍ବ ଅନୁଷ୍ଠିତ ହେଲା ସେ ଦି' ଜଣଙ୍କ ମଧ୍ୟରେ ତା'ର ବିଶଦ ବର୍ଣ୍ଣନା ଅନାବଶ୍ୟକ । କିନ୍ତୁ ଯଥାକ୍ରମେ ଡଃ ସେନ୍‌ଙ୍କର ମନେହେଲା ହୋଷ୍ଟେସ୍‌ଙ୍କ ସୁଗଠିତ ବକ୍ଷଦେଶରେ ଚୁପ୍‌କିନି ଶୋଇଥିଲାବେଳେ ଯେ ଏଇଆକୁ କୁହନ୍ତି ଭଲପାଇବା, ଯଦି ସେମିତି କିଛି ବସ୍ତୁ ଥାଏ ଦୁନିଆରେ । ଉଗ୍ର ଅସଂଭାଳ ସେକ୍ସ ନୁହେଁ, ଭୋକ ମେଣ୍ଟାଇଲା ପରି । ହେଲେ ସାହାଣ ମେଲାର ସଂପ୍ରୀତି ନୁହେଁ, ତା'ଠାରୁ ଅନେକ ଅଧିକ ଗଭୀର । ପରସ୍ପରକୁ ସମ୍ପୂର୍ଣ୍ଣରୂପେ ପାଇବାର ଅର୍ଥାତ୍ ଦେହମନପ୍ରାଣ ସମେତ ବୁଝିପାରିବାର ସାର୍ଥକତା । ନା କ'ଣ କହୁଛ ମିସେସ୍ ଚୌଧୁରୀ ? ଡଃ ସେନ୍ ହାତ ଉଠେଇଲେ ନନ୍ଦିତାଙ୍କ ପେଲବ ଓଠ ଦୁଇଟିରେ ହାତ ବୁଲେଇ ଆଣିବା ପାଇଁ । ହେଲେ ଆଖି ବୁଜି ଦେଲେ ସେଇ ସ୍ପର୍ଶସୁଖକୁ ଅନ୍ତରର ସହ ଅନୁଭବ କରିବେ ବୋଲି ।

କିନ୍ତୁ ସେଇ ନିମଗ୍ନ ନିମୀଳିତ ଅବସ୍ଥାରେ କିଏ ଗୋଟାଏ ପାଟି କରି ଉଠିଲା ତାଙ୍କ ମନ ଭିତରେ । ଭୂତଟା କେତେବେଳଠୁଁ କ'ଣ କହିବ କହିବ ବୋଲି ହେଉଥିଲା, ହେଲେ

ସେ ତାକୁ ବସେଇ ରଖିଥିଲେ । ତୋ କଥା ବୁଝିବା ପରେ, ଆମ ସଙ୍ଗମସୁଖ ସରିଯାଉ ଆଗେ, ଏହି ଭାବରେ । ଏଇକ୍ଷଣି ସଙ୍ଗମର ପରବର୍ତ୍ତୀ ଅବସ୍ଥାରେ ତା' ମୁହଁକୁ ଆଉ ବନ୍ଦ କରି ହେଲା ନାହିଁ । ସେ ପାଟି କରି ଉଠିଲା -

''ବାସ୍, ଏତେଦିନକେ ବୁଝିଲୁ ଭଲପାଇବା କାହାକୁ କୁହନ୍ତି ?''

(ହଁ ବୁଝିଲି, ବୁଝିଲି, ଏଥିରେ ପଚାରିବାର କ'ଣ ଅଛି ?)

ମାନେ ମିସ୍‌ମାନଙ୍କୁ ଭୋଗ କରିବା ହେଉଛି ସେକ୍ସ, ଆଉ ଏଇ ମିସେସ୍‌ମାନଙ୍କୁ ଭୋଗ କରିବା ହେଉଛି ଭଲପାଇବା ?

(ରବିସ୍ ! ଇଏ ସ୍ଥୂଳ ସେକ୍ସ ନୁହେଁ ଏବଂ ଇଏ ମିସେସ୍ ହେଲେ କ'ଣ ହେବ, ସେ ତାଙ୍କ ସ୍ୱାମୀଙ୍କୁ ଠକଉ ନାହାନ୍ତି ମୋଟେ । ସେ ଖାଲି ମୋତେ ଖୁସି କରିବାକୁ ଚାହାନ୍ତି, ମୋ ଦୁଃଖକୁ ପୋଛି ଦେବାକୁ ଚାହାନ୍ତି, ଆଉ କିଛି ନୁହେଁ । ସେ ସେମିତିକା ଲୋକ ନୁହଁନ୍ତି)

ଆଚ୍ଛା ?

ଆଚ୍ଛା ??

ମାନେ ସେ ତାଙ୍କ ସ୍ୱାମୀଙ୍କୁ ଠକଉ ନାହାନ୍ତି, କି ତୁ ବି' ନିଜକୁ ଠକଉ ନାହୁଁ - ନା କଅଣ ? ଇଏ ହେଉଛି ସେକ୍ସ-ସଙ୍କୋଚପଣିଆର ଗୋଟାଏ ସ୍ପେଶାଲ୍ ପାଠ, ଯାହା କେବଳ ତୋତେହିଁ ଜଣା । ଅଥବା ଯେହେତୁ ସେ ଜଣେ ମିସେସ୍, ସେ ଭଲ ପାଇବା ଜିନିଷଟାକୁ ବୁଝିଛନ୍ତି ଭଲ ଭାବରେ ତାଙ୍କ ସ୍ୱାମୀଙ୍କ ଜରିଆରେ । ତେଣୁ ତା'କୁ ସେ ଅନାୟାସରେ ପ୍ରୟୋଗ କରି ପାରୁଛନ୍ତି ତୋ ପ୍ରତି, ଯାହା ସମ୍ଭବ ହେଲା ନାହିଁ ଅନ୍ୟମାନଙ୍କ ଦ୍ୱାରା ।

ଶେଷକୁ ସହିହେଲା ନାହିଁ ତା'ର ଛିଗୁଲିଆ କଥା । ଡଃ ସେନ୍ ଉଠିପଡ଼ିଲେ ନନ୍ଦିତାଙ୍କର ଶ୍ୟାମଳ ମାଂସଳ ଦେହ ଉପରୁ । ରାଗିଲା ପରି । ଭୀଷଣ ରାଗିଲା ପରି ସେଇ ଅଗଭଙ୍ଗା ପ୍ରଶ୍ନକର୍ତ୍ତା ଉପରେ । ହଉ, ତୋରି କଥା ରହୁ, ରହୁ, ରହୁ ଏହିଭାବରେ ।

''କ'ଣ ହେଲା ?''

''କିଛି ନାହିଁ । ମୋତେ ସାଙ୍ଗେ ସାଙ୍ଗେ ଘରକୁ ଯିବାକୁ ପଡ଼ିବ । ପ୍ଲିଜ୍ ଏକ୍ସକିଉଜ୍ ମି ।''

ଡଃ ସେନ୍ ତୁରନ୍ତ ପ୍ରସ୍ଥାନ କଲେ ସେଠୁଁ । 'ବାଏ' ବୋଲି **ଥରୁଟାଏ କହିଥିଲେ** ମାତ୍ର ।

ଏବଂ ସେଇଦିନଠୁଁ ତାଙ୍କର ଦେଖା ହୋଇ ନାହିଁ ମିସେସ୍ ଚୌଧୁରୀ ଜୁନିଅର୍‌ଙ୍କ ସାଙ୍ଗରେ । ଦେଖା ହୋଇ ନାହିଁ କି ଫୋନ୍‌ରେ କଥାବାର୍ତ୍ତା ହୋଇ ନାହିଁ ଏବଂ କାଳେ

ଅଚାନକ ଭେଟ ହୋଇଯିବ, ତହୁଁ ଅସୁବିଧାରେ ପଡ଼ିବାକୁ ହେବ, ସେ ଯଥାଶୀଘ୍ର ବଦଳି ହୋଇ ଚାଲିଆସିଛନ୍ତି କ୍ୟାପିଟାଲ୍‌ରୁ । ଆପଣା ଅନୁରୋଧ କ୍ରମେ ।

ମଧ୍ୟବୟସର ସେଇ ଅଘଟଣ ଡଃ ସେନ୍‌ଙ୍କୁ ଚେତାଇ ଦେଇଥିଲା, ତାଙ୍କ ମୁହଁରେ ଗୋଟାଏ ମୁଥ ମାରିଲା ପରି, ଯେ ମଣିଷ ଯେତେ ବିଦ୍ୟାବୁଦ୍ଧିସମ୍ପନ୍ନ ହୋଇ ଯେତେ ଅଭିଜ୍ଞତା ହାସଲ କଲେ ମଧ୍ୟ ତା'ର ମନଟା ନିହାତି ଅବିଶ୍ୱାସୀ । ଏମିତି ବୋକା ବନେଇ ଦିଏ ତମକୁ, ବେଳେ ବେଳେ, ଯେ... ହେ ଭଗବାନ୍ ! କେମିତି ଭାବିଲୁ ଡଃ ସେନ୍, ଯେ ତୋର ବିଶିଷ୍ଟ ଦୁଃଖର ଲାଘବ ହୋଇଯିବ କୋଉ ଅର୍ଡ଼ିନାରୀ ସ୍ତ୍ରୀଲୋକ, ପୁଣି ବାହାହେଲା ସ୍ତ୍ରୀଲୋକର କୋଳରେ ଶୋଇପଡ଼ିଲେ ? ସତେକି ସେ କୋଉ ଦେବୀପ୍ରତିମା, ଆସି ପହଞ୍ଚିଯାଇଛି ଖାସ୍ ତୋରି ପାଇଁ !

ସେ ଭଗବଦ୍‌ଗୀତା ପଢ଼ିଛନ୍ତି, ଜ୍ଞାନ ଅର୍ଜନ କରିବା କ୍ରମରେ । ତେଣୁ ତାଙ୍କର ମନେପଡ଼ିଲା ଶ୍ରୀକୃଷ୍ଣ ଯାହା କହିଥିଲେ ଅର୍ଜୁନଙ୍କୁ, ଏଇ ଅବିଶ୍ୱାସୀ ମନର ପରିପ୍ରେକ୍ଷୀରେ । ''ଅଭ୍ୟାସେନ ତୁ କୌନ୍ତେୟ, ବୈରାଗ୍ୟେଣ ଚ ଗୃହ୍ୟତେ ।'' ଅଭ୍ୟାସ ଆଉ ବୈରାଗ୍ୟ । ବେଶ୍ । ସେତିକି ମୋ ଦେଇ ହୋଇପାରିବ ନାହିଁ ବୋଲି କିଏ କହିଲା ?

ଏହି ଭାବରେ ଅର୍ଥାତ୍ ମନର ଦୁର୍ବଳତାକୁ ଦବେଇ ରଖିବା ଦିଗରେ, ସେ ଆଉ ସେକ୍ସର ପାଖ ମାଡ଼ିଲେ ନାହିଁ, କାଳେ ପୁଣି ସେ କୋଉ 'ଭଲପାଇବା'ର ପାଲରେ ପଡ଼ିଯିବେ । ଅବଶ୍ୟ କେବେ କେମିତି କେଉଁ ସେକ୍ସଗତ ଫ୍ୟାଣ୍ଟାସି ତାଙ୍କୁ ହଇରାଣ କରେ, ତାଙ୍କ ସ୍ୱପ୍ନରେ କି ଅଧାନିଦରେ । କିନ୍ତୁ ଜାଗ୍ରତ ଅବସ୍ଥାରେ ସେ ନିଜକୁ ପୂରାପୂରି ଦୂରେଇ ରଖିଲେ ଯୌନ ଆବେଗରୁ । ସେଥିର ଇଙ୍ଗିତ ପାଇଲାଣି ।

ମଧ୍ୟ ଏହିପ୍ରକାର ନିଶ୍ଚୟକୁ ନେଇ ସେ ଆଉ ଉତ୍ତେଜିତ ହୋଇ ଉଠିଲେ ନାହିଁ କେଉଁ ବୃତ୍ତିଗତ ଦାୟିତ୍ୱ ତୁଲେଇବାକୁ ଯାଇ । ଯେ ମୁଁ ଗୋଟାଏ ବିଶେଷ ମୂଲ୍ୟବାନ୍ କାମ କରିବାକୁ ଯାଉଛି, ଯାହା ଦ୍ୱାରା କେଉଁ ବଡ଼ଧରଣର ଉନ୍ନତି ହେବ ଜନସାଧାରଣଙ୍କର ଅବା ମନ୍ତ୍ରୀଙ୍କ ଇମେଜ୍‌ର । କରିଯାଅ ତମ କାମ ତମ ନିଜ ହିସାବରେ ଆପଣା ବୁଦ୍ଧିବିଚାର ଏବଂ ନୀତିବୋଧକୁ ବଜାୟ ରଖି ଏବଂ ଦ୍ୱନ୍ଦ୍ୱ ଉପୁଜିଲେ ଧୀରେ ସୁସ୍ଥେ ଓହରିଆସ ସେଥିରୁ । ଦାୟିତ୍ୱଟିକୁ ବଢ଼େଇ ଦିଅ ଆଉ କାହା ହାତକୁ । ସେହି ଭାବରେ ଟିକିଏ 'ପ୍ରାକ୍ଟିକାଲ୍' ହେଲେ କ୍ଷତି ନାହିଁ ଏବଂ ଭାଗ୍ୟ ଭଲ ତାଙ୍କୁ ସେଭଳି କୌଣସି ଦ୍ୱନ୍ଦ୍ୱର ସମ୍ମୁଖୀନ ହେବାକୁ ପଡ଼ି ନାହିଁ, ତାଙ୍କର ଅବଶିଷ୍ଟ ଚାକିରି ଜୀବନରେ ।

ମୁଖ୍ୟମନ୍ତ୍ରୀ ଓ ନନ୍ଦିତା ଚୌଧୁରୀ ଓଗେରଙ୍କ କ୍ୟାପିଟାଲ୍‌ରୁ ମୁକ୍ତ ହୋଇ ଆସିଲା ପରେ ସେ ତାଙ୍କ ଜୀବନଚର୍ଯ୍ୟାର ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଯାଇଛନ୍ତି ବୋଲି ମନେକଲେ । ଆଉ ଚିନ୍ତା ନାହିଁ । ଏଣିକି ପରିଣତ ବୟସର ଟାଣ ଖୋଲପା ଆଡ଼କୁ ଗତି

କରିବା କଥା । ଯେତେବେଳେ ତାଙ୍କ ନିଜସ୍ୱ ବ୍ୟକ୍ତିତ୍ୱର ବଡ଼ପଣ ଅଧିକରୁ ଅଧିକ ପୋଖତ ହୋଇ ଉଠିବ । ତେଣୁ ଅବିଶ୍ୱାସୀ ମନ ଯେ ପୁଣି ତାଙ୍କୁ ଠକେଇବ, ପୋଖତ ନାରିକେଳର କେଉଁ ଦୁର୍ବଳ ଅଂଶକୁ ଉଖୁରେଇବ.... ନା, ଅସମ୍ଭବ ।

ତଥାପି ସେ ଗୋଡ଼େ ଗୋଡ଼େ ଜଗିଲେ ତାଙ୍କ ମନକୁ କାଳେ ସିଏ ବାଟବଣା ହୋଇଯିବ । ଯଥା ସେ ନିଜକୁ ଧରା ଦେଲେ ନାହିଁ, ଯେତେବେଳେ ପରବର୍ତ୍ତୀ ସରକାରୀ ଦଳର ଜଣେ ବିଶିଷ୍ଟ ନେତା ଜଗନ୍ନାଥ ସେନାପତି ତାଙ୍କର ସମାଜତତ୍ତ୍ୱ ଉପରେ ପ୍ରକାଶିତ ପ୍ରବନ୍ଧ ''ରାଜତନ୍ତ୍ରରୁ ଅମଲାତନ୍ତ୍ର : ପ୍ରତିଶ୍ରୁତି ଓ ପରିଣତି''ର ଭୂରି ଭୂରି ପ୍ରଶଂସା କଲେ ଏବଂ କହିଲେ ଯେ ଏଭଳି ଗୋଟିଏ ପଣ୍ଡିତଙ୍କୁ ପାଇଲେ ଯେକୌଣସି ପାର୍ଟି ଧନ୍ୟ ହେବ । ସେତେବେଳେ ଡଃ ସେନ୍ ଚାକିରିରୁ ଅବସର ନେବା ଉପରେ ଏବଂ ତାଙ୍କର ଭୟ ହେଲା ଯେ ତାଙ୍କ ମନ ତାଙ୍କୁ ଫୁସୁଲେଇବ କୋଉ ପାର୍ଟିରେ ଯୋଗ ଦେଇ ଆହୁରି ନାଆଁ କମେଇବା ପାଇଁ । କିନ୍ତୁ ସେ ଯଥାସମୟରେ ଓହରି ଆସିଲେ ସେଇ ପ୍ରଲୋଭନରୁ । ଧନ୍ୟବାଦ । ମୁଁ ମୋ ନିଜସ୍ୱ ରାଜକୀୟ ପ୍ରତିଶ୍ରୁତିକୁ ଅକ୍ଷୁଣ୍ଣ ରଖିବି । ପ୍ରଶାସକ-ପଣ୍ଡିତଟିଏ ହୋଇ ରହିବି । ନେତା ହେବାକୁ ଚାହେଁ ନାହିଁ ।

ଆଉ ଗୋଟିଏ ଦୃଷ୍ଟାନ୍ତ ଦେଲେ ହେବ ଅନ୍ୟ ଏକ ସ୍ତରରେ । କୋରାପୁଟର ମାଳ ଅଞ୍ଚଳକୁ ଟୁର୍‌ରେ ଯାଇଥିଲାବେଳେ ସେ ଥରେ ହଠାତ୍ ବେମାର ହୋଇ ପଡ଼ିଲେ ଏବଂ ବାଧ ହୋଇ ଗୋଟିଏ ଗାଆଁରେ ରହିଲେ ଦିନୁଟାଏ ଜଣକ ଘରେ, ତା'ର ଅତିଥି ହୋଇ । ଟିକିଏ ସୁସ୍ଥ ହୋଇ ଉଠିଲା ପରେ ଦୂରବର୍ତ୍ତୀ ଡାକ୍ତରଖାନାକୁ ଯିବା ପୂର୍ବରୁ । ସେ ସେଇ ଆତିଥ୍ୟର ଦାମ୍ ଚୁକେଇବାକୁ ଭୁଲି ନ ଥିଲେ । ବେଶ୍ କିଛି ଟଙ୍କା ଗୁଞ୍ଜି ଦେଇଥିଲେ ଉପକାରୀ ଗୃହସ୍ଥର ହାତରେ । କିନ୍ତୁ ପରେ ପରେ ତାଙ୍କର ମଧ ମନହେଲା ଆଉ ଗୋଟାଏ କଥା କରିବା ପାଇଁ । ତା'ର ବାରତେର ବର୍ଷ ବୟସର ଗୁଲୁଗୁଲିଆ ହସକୁରୀ ଝିଅ ତାରୁକୁ ଭିଡ଼ି ଧରିବାପାଇଁ । ସ୍ନେହର ଆତିଶଯ୍ୟରେ । ହସକୁରୀ ହେଲେ ମଧ ମୋଟେ ଫାଜିଲ୍ ନୁହେଁ ଝିଅଟା ଏବଂ ଦିନରାତି କେତେ ସେବା ନ କରିଛି ସେ, କୋଉଠୁ ଆସି ପହୁଞ୍ଚି ଯାଇଥିବା ସାହେବ-ମଉସାର ! କିନ୍ତୁ ସେ ଯଥା ସମୟରେ ନିରସ୍ତ ହେଲେ । ଅବଶ୍ୟ ସେ ତାଙ୍କ ନାତୁଣୀ ବୟସର ହେବ । ଯୌନ ଆବେଗର ପ୍ରଶ୍ନ ଉଠୁ ନାହିଁ । କିନ୍ତୁ ଭାବିଲେ - ଧାତ୍, ଏଇ ସମ୍ପର୍କ-ସଂପ୍ରୀତି-ଭଲପାଇବା-ସେକ୍ସ ଇତ୍ୟାଦିର ଜ୍ୟାମିତିରେ କିଛି ବାଗବାଇଶ ଅଛି ନା କ'ଣ ? କ'ଣ ଭୁଲିଗଲୁଣି ଯେଉଁ ଭେଳିକି ଦେଖେଇଲା ସେଇ କ୍ୟାପିଟାଲ୍ ରମଣୀ ? ମାଆ-ଭଉଣୀ ଭାବକୁ କେମିତି ଗୋଳେଇ ପୋଳେଇ ହେଲା ସେକ୍ସ ସାଙ୍ଗରେ ? ନାଇଁ ଥାଉ । ସେ ଯଥାସମୟରେ ନିଜକୁ ଫେରାଇ ଆଣିଲେ ତାରୁକୁ ମନଲାଖି ଗେହ୍ଲା କରିବାର ପ୍ରବୃତ୍ତିରୁ ।

ହେଲେ ପ୍ରତିଶ୍ରୁତିର ପରିଣତି ଆଡ଼କୁ ଗତି କରିବା ବାଟରେ କେବଳ ଗୋଟାଏ ଆତ୍ମଗ୍ଳାନି ବିରକ୍ତ କରୁଥିଲା ତାଙ୍କୁ, ମଝିରେ ମଝିରେ । ମିସେସ୍ ଚୌଧୁରୀର ଶେଯରୁ ଚଟ୍‌କିନି ଉଠିଯାଇ ପଳେଇ ଆସିଲୁ ଘରକୁ, ଏଇ ନାଟକୀୟତାକୁ ବୁଝିହେବ ହୁଏତ । ଚୈତନ୍ୟୋଦୟ ଏମିତି ହୁଏ ବୋଲି କୁହାଯାଏ । ସହସା । ତେଣୁ ଉପସ୍ଥିତ ବର୍ତ୍ତମାନ ଠାରୁ ଚଟ୍‌କିନି ପଳେଇ ଆସିବାକୁ ପଡ଼େ । କିନ୍ତୁ ଅନ୍ତତଃ ତା' ପରଦିନ ତୁ କ'ଣ ମିସେସ୍ ଚୌଧୁରୀଙ୍କୁ କହିପାରି ନ ଥାଆନ୍ତୁ, ସେ ଫୋନ୍ କଲାବେଳେ, ଯେ କ୍ଷମା କରିବ, ମୁଁ ତମ ପାଖକୁ ଆଉ ଯାଇପାରିବି ନାହିଁ ଏବଂ ଏକୁଟିଆରେ ତମ ସାଙ୍ଗରେ ମିଶିପାରିବି ନାହିଁ, କାହିଁକିନା ଏଇଟା ଖରାପ କଥା ? କୋଉ ପୁରୁଣାକାଳିଆ ପାପ ନୁହେଁ ଯାହାକୁ ହସି ଉଡ଼େଇ ଦେବ, ରିଏଲ୍ ବୁଦ୍ଧିବିଚାରଗତ ଦୁର୍ନୀତି ? ସରଳ ଭାଷାରେ ଠକାମି ? କିନ୍ତୁ କାହିଁକି ସେତିକି କରିପାରିଲୁ ନାହିଁ ? ସତ୍‌ସାହସର ଅଭାବ ? ନା ତୋ ମନରେ ତଥାପି ଲାଖି ରହିଥିଲା ସେଇ ଭାବଟିକ, ଯେ ସେ ପ୍ରକୃତରେ ତୋତେ ଭଲ ପାଉଥିଲା ଏବଂ ତୋର ସତ ବଳିଲା ନାହିଁ ସିଧାସଳଖ ତାକୁ ନାସ୍ତି କରିବାପାଇଁ, ତା' ମୁହଁ ଉପରେ ? ଗ-ଡ୍ ! ତେବେ ଯାହାହେଉ ସେଇ ଆତ୍ମଗ୍ଳାନିର ଛୁଞ୍ଚିଫୋଡ଼ା ମଧ କମି କମି ଗଲା, କ୍ୟାପିଟାଲ୍ ଜୀବନର ସେଇ ଅନୁଭୂତିଟା ଅଧିକରୁ ଅଧିକ ଅତୀତ ଏବଂ ବିଗତ ହୋଇ ଆସିଲାରୁ ।

ବୟସସୀମା ଅନୁଯାୟୀ ଅବସର ନେବା ପୂର୍ବରୁ ଡଃ ସେନ୍ ସ୍ୱେଚ୍ଛାକୃତ ଅବସର ନେଲେ, ପୂରା ପେନ୍‌ସନ୍‌ର ଅଧିକାର ପାଇଲା ପରେ । କାରଣ ତାଙ୍କର ଆଶଙ୍କା ହେଲା ଯେ ଅଣପ୍ରାକ୍ଟିକ୍ୟାଲ୍ ଅବାଗିଆ ଡଃ ସେନ୍‌କୁ ହୁଏତ କୌଣସି ସରକାର ତଳକୁ ଖସେଇ ଦେଇପାରିବ ନାହିଁ, କିନ୍ତୁ ତା'କୁ ଚିଫ୍ ସେକ୍ରେଟେରୀ କିମ୍ବା ସେହି ପ୍ରକାର କୌଣସି ଉତ୍ତୁଙ୍ଗ ଶିଖରୀରେ ବସେଇବାକୁ ଚାହିଁବେ ନାହିଁ ସେମାନେ । ଯେହେତୁ ସେଥିର 'ରାଜନୈତିକ' ଭୂମିକାକୁ ନିଭେଇ ପାରିବ ନାହିଁ ଲୋକଟା । ବେଶ୍ । ମୋର ଦରକାର ନାହିଁ ସେଇ ଉତ୍ତୁଙ୍ଗ ଶିଖରୀ । ମୁଁ ବରଂ ଦେଶର ରାଜନୀତି-ଅର୍ଥନୀତି ବିଷୟରେ ଆହୁରି ବେଶି ଲେଖି ପାରବି, ଏବଂ ଆହୁରି ସ୍ପଷ୍ଟ ଭାବରେ, ଅବସର ନେଲା ଉତ୍ତାରୁ । ତେଣୁ ଠିକଣା ସମୟରେ ଖସି ଆସିଲେ ଭଲ । ପ୍ରଶାସକ-ପଣ୍ଡିତ କେବଳ ପଣ୍ଡିତଟିଏ ହୋଇ ରହିବ । କ୍ଷତି କ'ଣ ? ପରିଣତ ବୟସରେ ସେଇ ହେବ ମୋ ଇମେଜ୍‌ର ମୂଳାଧାର ଏବଂ ତା'ର ଜ୍ୟୋତି ଆହୁରି ଝଳି ଉଠିବ ।

ଡଃ ସେନ୍ ଆହୁରି କେତେ କ'ଣ ଲେଖିଗଲେ ଅନୁଭୂତ ସମାଜକୁ ଆଶ୍ରାକରି, ଯାହାକୁ ପ୍ରକାଶକମାନେ ଆଗ୍ରହର ସହିତ ଛପାଇଲେ । 'ନୂତନ ସାମନ୍ତବାଦ', 'ସମାଜ ସଂସ୍କାରର ମୂଳକଥା' ଏବଂ 'ବିଶ୍ୱଭିତ୍ତିକ ଅର୍ଥନୀତି' ନାମରେ ତାଙ୍କର ତିନୋଟି ବହି ମଧ ପ୍ରକାଶିତ ହେଲା, ଯାହାର ପ୍ରଶଂସାମୂଳକ ରିଭିଉ ବାହାରିଥିଲା ବିଭିନ୍ନ ପତ୍ରପତ୍ରିକାରେ ।

କିନ୍ତୁ ପରିଣତ ବୟସର ଏଇ ସଫଳତା ସାଙ୍ଗକୁ ଡଃ ସେନ୍ ମଧ୍ୟ ବୁଢ଼ା ହେଲେ । ଏବଂ 'ମୁଁ କ'ଣ ସତେ ବୁଢ଼ା ହେଲିଣି ?' ଏଇ ଭାବ ଆସିଲା ତାଙ୍କ ମନକୁ ।

ସମବୟସ୍କ ବୁଢ଼ାମାନଙ୍କ ସାଙ୍ଗରେ ତୁଳନା କରି ଦେଖିଲେ ସେ ଅନାୟାସରେ ନିଜକୁ କହିପାରନ୍ତି ଯେ ମୁଁ ଯଥେଷ୍ଟ ଫିଟ୍ ଅଛି ମୋ ବୟସକୁ ଚାହିଁ । ତଥାପି ସତୁରି ପାରି ହେଲା ବେଳକୁ ତାଙ୍କର ମନେହେଲା ଯେ ତାଙ୍କର ଶକ୍ତି ସାମର୍ଥ୍ୟ ବେଶ୍ କମି ଗଲାଣି । ଏଣିକି ପଢ଼ିଲେଖି ହେଉ ନାହିଁ ବେଶି ସମୟ ଯାଏଁ । ଆଖି ବୁଜି ହୋଇ ଆସୁଛି । ଅଧଘଣ୍ଟାଏ ଘଣ୍ଟାଏ ଉତ୍ତାରୁ ଆଖି ଖୋଲିଲା ପରେ ପୃଥିବୀ ନୂଆ ପରି ଲାଗେ ଏବଂ ବଳ ଆସେ ବହିଖାତାକୁ ପୁଣି ବୀରବିକ୍ରମରେ ମାଡ଼ିବସିବା ଲାଗି । ହେଲେ ତା'ର ମିଆଦ ସୀମିତ । ଏହି ପରିସ୍ଥିତିରେ ବିରକ୍ତିସୂଚକ ଅସଭ୍ୟ ଶବ୍ଦ ମଧ୍ୟ ବେଳେ ବେଳେ ବାହାରି ପଡ଼େ ତାଙ୍କ ମୁହଁରୁ ଏବଂ ପରେ ପରେ ସେ ଲଜ୍ଜିତ ହୁଅନ୍ତି ସେଥିପାଇଁ ।

କ୍ରମଶଃ ଡଃ ସେନ୍‌ଙ୍କର ମନେହେଲା ଯେ ତାଙ୍କର ତଥାକଥିତ ବୁଦ୍ଧିବାଦୀ ସାଙ୍ଗମାନେ ମଧ୍ୟ ବିଶେଷ ଆସିବାକୁ ନାହାନ୍ତି । ତାଙ୍କ ଘରକୁ କିମ୍ବା କ୍ଲବକୁ ଏବଂ ସେମାନଙ୍କ ଘରକୁ ଗଲେ ଏଭଳି କୁଛାଣ ଶୁଣିବାକୁ ମିଳେ ତାଙ୍କଠାରୁ ଯେ ଡକ୍ଟର୍ ସେନ୍ ବ୍ୟସ୍ତ ହୋଇ ଉଠନ୍ତି କେମିତି ସେଠୁଁ ପଳେଇ ଆସିବେ ବୋଲି ।

ଯଥେଷ୍ଟ ସଞ୍ଚିତ ଧନ ଥିଲେ ମଧ୍ୟ ଡଃ ସେନ୍ ଘରଟିଏ ତୋଳି ନାହାନ୍ତି । ତୋଳିବାକୁ ଚାହିଁ ନାହାନ୍ତି । ଘରକରଣାର ଝମେଲାରେ ପଡ଼ି ମୋ ସ୍ୱଳ୍ପସମୟକୁ ନଷ୍ଟ କରିବି କାହିଁକି ?

କିନ୍ତୁ ପଢ଼ିବା ଲେଖିବାର ଶକ୍ତି ଯେତିକି ଊଣା ହୋଇ ଆସିଲା, ଏଣେ ମୁଷ୍ଟିମେୟ ବୁଦ୍ଧିବାଦୀ ବନ୍ଧୁଙ୍କ ଯିବାଆସିବା ଯଥେଷ୍ଟ କମିଗଲା, ଡଃ ସେନ୍‌କୁ ଅନେକ ସମୟ ଯାଏଁ ଖାଲି ଏକୁଟିଆରେ ବସି ଆକାଶ ପୃଥିବୀକୁ ଅନେଇ ରହିବାକୁ ପଡ଼ିଲା । ତାଙ୍କ ହୋଟେଲ୍ ରୁମ୍‌ର ଖୋଲା ଝରକା ଭିତର ଦେଇ । ହଁ, ଅଧିକ ବ୍ୟୟସାପେକ୍ଷ ହେଲେ ମଧ୍ୟ ସେ ଫ୍ଲାଟ୍ ଛାଡ଼ି ହୋଟେଲ୍ ଜୀବନକୁ ଆଦରି ନେଇଛନ୍ତି, ତାଙ୍କୁ ଛଅସ୍ତରି ବର୍ଷ ପୂରିଲା ବେଳକୁ । କାରଣ ଘରକରଣାର ସାମାନ୍ୟତମ ଦାୟିତ୍ୱ ନାହିଁ ଏଠି । ତମେ ପୂରାପୂରି ମୁକ୍ତ ସେଇସବୁ ବାଜେ ବ୍ୟାବହାରିକ କାମରୁ । ହେଲେ ସ୍ୱାଧୀନ ସମୟତକ ଅଧିକାଂଶରେ ଖାଲି ଆକାଶ ପୃଥିବୀକୁ ଅନେଇ ରହିବାକୁ ପଡୁଛି ।

ଆକାଶ ଓ ପୃଥିବୀ । ଆକାଶ ଠିକ୍ ଅଛି । ଆକାଶରେ ଜ୍ୟୋତିଷ୍କମାନଙ୍କର ବିହାର, ବିହଙ୍ଗମାନଙ୍କ ବିହରଣ ତଥା ଭାସି ଭାସି ଯାଉଥିବା କିମ୍ବା ଘନେଇ ଆସୁଥିବା ମେଘମାନଙ୍କ ଅଳସ ବିଳାସ, ତାଙ୍କ ଦିନଚର୍ଯ୍ୟା ସାଙ୍ଗରେ ମିଶିଗଲା ପରି ମନେହୁଏ ଏବଂ ତାଙ୍କୁ କହିଲା ପରି ଲାଗେ ଯେ ତମ ବଡ଼ପଣ ଆମ ମହାନତାର ଅଂଶବିଶେଷ । ଦୃପ୍ତ ଏବଂ ଶାଶ୍ୱତ । ହେଲେ ହୋଟେଲ୍‌ର ଭିତର ଓ ବାହାର ପୃଥିବୀଟା ମହା ବିରକ୍ତ ଲାଗେ ବେଳେବେଳେ ।

ଯାବତୀୟ ଅର୍ଥହୀନ ହୋ-ହଲ୍ଲା, ଥଟ୍ଟା ତାମସା ଏବଂ ସାଙ୍ଗସୁଖ ହେବାର ଗର୍ଜନ। ନାନାଦି କିସମର ଟୋକାବୁଢ଼ା ଏବଂ ପୁରୁଷସ୍ତ୍ରୀଙ୍କୁ ନେଇ। ସେତିକିବେଳେ ତାଙ୍କ ବୁଢ଼ାପଣ ଜିନିଷଟା ବେଶି ମାଡ଼ି ପଡ଼େ ଡଃ ସେନ୍‌ଙ୍କୁ ଏବଂ ତାଙ୍କର ଇଚ୍ଛା ହୁଏ ଏଠୁଁ ପଳେଇଯିବେ ଆଉ କେଉଁଠିକି। ଯେଉଁଠି ଏହିପ୍ରକାର ପ୍ରାଣୀମାନେ ନ ଥିବେ। କେବଳ ଥିବ ଆକାଶ ଏବଂ ପୃଥିବୀରେ ଥିବା ପାହାଡ଼ ପର୍ବତ, ନଈନାଳ ଏବଂ ବନବନାନୀର ଦୃଶ୍ୟ। କାଁଭାଁ କେଉଁଠି ଥିଲେ ଥିବେ ମଣିଷମାନେ। ହେଲେ ଦୂରରୁ ଦିଶୁଥିବେ, ଲେସି ହୋଇ ଯାଇଥିବେ ସେଇ ଦୃଶ୍ୟପଟରେ। କିନ୍ତୁ କେଉଁଠି ଭଲା ମିଳିବ ସେମିତି ଗୋଟାଏ ହୋଟେଲ୍ ?

"ସାର୍, କ'ଣ ଦେଖୁଛନ୍ତି ବସି ?"

ଡଃ ସେନ୍‌ଙ୍କ ଅଧାନିଦ ଭାଙ୍ଗିଗଲା ଏବଂ ସେ ଅନେଇଲେ ଆଗନ୍ତୁକ ଆଡ଼କୁ। କ'ଣ ତା' ନାଆଁଟି ? ମନେପଡୁ ନାହିଁ ଠିକ୍ ଭାବରେ।

"ଚିହ୍ନି ପାରୁ ନାହାନ୍ତି ସାର୍ ? ମୁଁ ହେଉଛି ସୁନୀଲ୍ ମହାନ୍ତି। କେତେ ରଙ୍ଗବେରଙ୍ଗ ଗୋଲାପଚାରା ଯୋଗାଡ଼ କରି ଆଣୁଥିଲି ଆପଣଙ୍କ ଲନ୍ ପାଇଁ, ଆପଣ ଯେତେବେଳେ କ୍ୟାପିଟାଲ୍‌ରେ ଥିଲେ।"

ଶେଷକୁ ତାକୁ ଚିହ୍ନିଲେ ଡଃ ସେନ୍। କିରାଣି ସଂପ୍ରଦାୟର ଲୋକଟିଏ ଯେ ତାଙ୍କ ଦପ୍ତରରେ ଥିଲା କିଛି ଦିନ ପାଇଁ ଏବଂ ଫାଇଲକାମ ଠାରୁ ଏଇ ସବୁ କାମରେ ବିଶେଷ ପାରଦର୍ଶିତା ଦେଖାଇ ପାରୁଥିଲା। ବୁଝିଲେ ଯେ ସେ ଚାକିରିରୁ ଇସ୍ତଫା ଦେଲାଣି କେବେଠୁଁ ଏବଂ ବେପାରବଣିଜ କରି ସୁଖରେ ଅଛି ଏଇକ୍ଷଣି 'ଭଗବାନ୍‌ଙ୍କ କୃପାରୁ'। ଏବଂ ଚେଇଁ ଉଠିଲେ ଯେତେବେଳେ ଶୁଣିଲେ ସେ କହୁଛି ଯେ ଗୋଟିଏ ସମ୍ପୂର୍ଣ୍ଣ ନୂଆ ଧରଣର ହୋଟେଲ୍ ଖୋଲିଛି ଏବେ, ଏବଂ 'ସାର୍'ଙ୍କୁ ନିମନ୍ତ୍ରଣ କରୁଛି ସେଠିକି ଆସି ରହିବା ଲାଗି। କହୁଛି -

"ଆପଣଙ୍କୁ ନିଶ୍ଚୟ ଭଲ ଲାଗିବ ସାର୍। କାରଣ ସିଏ ହୋଟେଲ୍ ସତ, କିନ୍ତୁ କେବଳ ବରିଷ୍ଠ ନାଗରିକମାନଙ୍କ ପାଇଁ। କିନ୍ତୁ ଜରା ନିବାସ ନୁହେଁ। ମୋଟେ ନୁହେଁ। ପ୍ରତ୍ୟେକ ଗେଷ୍ଟଙ୍କୁ ମିଳିବ ଆପଣା ଖିଆଲ୍ ଓ ରୁଚି ମୁତାବକ ଖାଦ୍ୟ ଏବଂ ମନୋରଞ୍ଜନ। ମୋ ହୋଟେଲ୍‌ର ନାଆଁ କ'ଣ ଜାଣନ୍ତି ? ତା' ନାଆଁ 'ପ୍ରଦୋଷ ବିଳାସ'। ନିବାସ ନୁହେଁ, ବିଳାସ।"

ମୃଦୁ ମୃଦୁ ହସୁଥିଲେ ଡଃ ସେନ୍, ଆମୋଦିତ ହେଲାପରି। ବୁଝିଲେ ଯେ ଲୋକଟା ତାଙ୍କର ଅନ୍ୟତମ ଭକ୍ତ ହୋଇପାରେ ହୁଏତ, କିନ୍ତୁ ଏଇ ନିମନ୍ତ୍ରଣର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ସ୍ୱନାମଧନ୍ୟ ଡଃ ସେନ୍‌ଙ୍କୁ ସେଇ ହୋଟେଲ୍‌ର ଚିରସ୍ଥାୟୀ ବାସିନ୍ଦା ହିସାବରେ ପାଇଲେ ତା'ର ମାନମର୍ଯ୍ୟାଦା ବଢ଼ିଯିବ ଅନ୍ୟମାନଙ୍କ ଆଖିରେ। ହେଲେ ହଠାତ୍ ତାଙ୍କର

ମନେହେଲା ଯେ ବୋଧହୁଏ ମନ୍ଦ ହେବ ନାହିଁ ସେଠିକି ଗଲେ । କାରଣ ସେଠି ଅନ୍ତତଃ ନ ଥିବ ଏଠିକାର ଟୋକାଟାକଳିଆ (ଯଦିଓ ସମସ୍ତେ ଟୋକା-ଟୋକୀ ନୁହଁନ୍ତି) ପ୍ରଗଲ୍‌ଭତା ଓ ଚପଳତା ଯାହା ଦୁର୍ବିଷହ ହୋଇ ଉଠିଲାଣି । ହେଲେ ପ୍ରବୀଣ ପ୍ରଶାସକଙ୍କର ଗୋଟାଏ ସର୍ତ୍ତ ବାଢ଼ିବାକୁ ଇଛା ହେଲା, ହାଲୁକାରେ, ମନଲାଖି ଆସ୍ଥାନଟିଏ ପାଇବା ପାଇଁ । କହିଲେ,

"ଶୁଣ ସୁନୀଲ୍ । ତମର ନିମନ୍ତ୍ରଣ ପାଇଁ ଧନ୍ୟବାଦ । କିନ୍ତୁ ମୁଁ ଯଦି ରହିବି ତମ ପ୍ରଦୋଷ- ବିଳାସରେ, ମୋର ଏମିତି ଗୋଟିଏ ଦି'ଟିକିଆ ରୁମ୍‌ର ସୁଇଟ୍ (suite) ଦରକାର, ଯାହାର ଗୋଟିଏ ପଟରେ କୌଣସି ରୁମ୍ ନ ଥିବ ଆଉ କାହା ପାଇଁ । ଝରକା ଖୋଲି ଦେଲେ କେବଳ ଆକାଶପବନ..."

"ବୁଝିଲି ସାର୍, ବୁଝିଲି । ଏବଂ ଏକ୍‌ଜାକ୍‌ଟ୍‌ଲି ସେମିତି ଗୋଟିଏ ସୁଇଟ୍ ଏଇକ୍ଷଣି ଖାଲି ଅଛି ଆପଣଙ୍କ ପାଇଁ । ଫାଷ୍ଟ ଫ୍ଲୋର୍‌ର 101 ଏବଂ 101 A । ବାଁ ପାଖ ଝରକା ଖୋଲିଦେଲେ କେବଳ ଆକାଶପବନ, ଏବଂ ତା' ତଳକୁ ନୀଳଶୈଳ । ମୁଁ କବି ନୁହେଁ ସାର୍, କିନ୍ତୁ ସେଇଭଳି ଭାବ ଆସିବ ଆପଣଙ୍କ ମନକୁ ଏବଂ ତା' ତଳକୁ ଛୋଟିଆ ଗାଆଁଟିଏ । ଆଉ ଅଙ୍କାବଙ୍କା ସରୁ ରାସ୍ତାଟିଏ ଲମ୍ବିଯାଇଛି କାହିଁ କେତେ ଦୂରକୁ, ପାହାଡ଼ର କଡ଼େ କଡ଼େ ..."

"ମୁଁ କ'ଣ ସୂର୍ଯ୍ୟାସ୍ତ ଦେଖିବି ନା ସୂର୍ଯ୍ୟୋଦୟ ? ନା ସେଭଳି କୌଣସି ସୌଭାଗ୍ୟ ମିଳିବ ନାହିଁ ମୋତେ ?"

"କିଏ କହିଲା ମିଳିବ ନାହିଁ ? ସୂର୍ଯ୍ୟୋଦୟ ଦେଖିବେ ସାର୍ । ଝରକାଟା ଠିକ୍ ପୂର୍ବଦିଗକୁ । କିଛି ଆପତ୍ତି ନାହିଁ ତ ?"

"ଓ-ନୋ ! ଆଇ ଉଡ୍ ଲଭ୍ ଇଟ୍ ! ସୂର୍ଯ୍ୟାସ୍ତ ସାଙ୍ଗରେ ମୋର କ'ଣ ସମ୍ପର୍କ ଅଛି ?"

ଏହିପ୍ରକାର ରସିକତାଟିଏ ଛାଡ଼ିଦେଲେ ଡଃ ସେନ୍, ନିଜକୁ ଛିଗୁଲେଇଲା ପରି, ହେଲେ ଯାହା ପଛକୁ ଥିଲା ଗଭୀର ଆତ୍ମବିଶ୍ୱାସ । ସେଇଠୁଁ କହିଲେ,

"ଓ-କେ, ଥ୍ୟାଙ୍କ୍ ୟୁ । ମୁଁ ରହିବି ସେଠି, ସେଇ ରୁମ୍ ଯୋଡ଼ିକରେ ।"

ଏହି ଭାବରେ ଡଃ ସେନ୍ ଆସି ରହିଲେଣି 'ପ୍ରଦୋଷ ବିଳାସରେ ଆଜିକୁ ପ୍ରାୟ ବର୍ଷେ ହେଲା । କାହାରି ସାଙ୍ଗରେ ବନ୍ଧୁଭାବ ହେଲାଣି ବୋଲି କହିଲେ ଭୁଲ୍ ହେବ, କିନ୍ତୁ ମଣିଷପ୍ରାଣୀମାନଙ୍କ ଚପଳତା-ପ୍ରଗଲ୍‌ଭତା ତାଙ୍କ ଆଖିକୁ ବିନ୍ଧୁ ନାହିଁ ଆଉ ଏବଂ ଆକାଶ ପୃଥିବୀକୁ ଆରାମରେ ଅନେଇ ରହିବାରେ କୌଣସି ଅସୁବିଧା ହେଉ ନାହିଁ ।

ସେଦିନ ପୂର୍ବାହ୍ନରେ ତାଙ୍କ ଆଖିକୁ ନିଦ ଆସି ଯାଇଥିଲା ବେଶ୍ କିଛି ସମୟ ପାଇଁ । ସେଥିରେ କିଛି ନୂତନତ୍ୱ ନ ଥିଲା । କିନ୍ତୁ ଅଜବ୍ ନୂଆ ଥିଲା ସେଇ ଦୃଶ୍ୟ ଗୋଟିକ ଯାହା ତାଙ୍କ ଆଖିରେ ପଡ଼ିଲା ୧୦୪ ନମ୍ବର ରୁମ୍‌ରେ । ଯେତେବେଳେ ସେ ଲଞ୍ଚର ଘଣ୍ଟା ଶବ୍ଦ ଶୁଣି ବାହାରି ଆସୁଥିଲେ ତାଙ୍କ ରୁମ୍‌ରୁ, କରିଡର୍ ବାଟ ଦେଇ ଡାଇନିଙ୍ଗ୍ ହଲ୍‌କୁ ଯିବା ପାଇଁ । ନିଦତକ ଆଖିରୁ ଛଡ଼େଇ ଦେଇ । ହେଲେ ତାଙ୍କର ମନେହେଲା ଯେ ନିଦଟା ପୂରାପୂରି ଛାଡ଼ି ନାହିଁ ବୋଧହୁଏ । କ'ଣ ଚାଲିଛି ଏଠି ?

ସୋଫାରେ ପାଖାପାଖି ହୋଇ ବସିଛନ୍ତି ଦି'ଜଣ । ବୁଢ଼ାଟିଏ ଆଉ ବୁଢ଼ୀଟିଏ ଏବଂ ବୁଢ଼ା ବୁଢ଼ୀର ଗୋଟିଏ ହାତ୍‌କୁ ଧରି ଆଉଁଶୁଛି । ଆଉଁଶୁଛି ତ ଆଉଁଶୁଛି !

ଅଭଦ୍ରାମି ହେବ ବୋଲି ଡଃ ସେନ୍ ଅଟକି ଯାଇ ପାରିଲେ ନାହିଁ, ଦୃଶ୍ୟଟାକୁ ନିରେଖି ଦେଖି ତା'ର ସତମିଛ ବୁଝିବାପାଇଁ । ହେଲେ କ୍ଷଣକ ପରେ ତାଙ୍କର ମନେହେଲା ଯେ ଦୃଶ୍ୟ ସତ, ମିଛ ନୁହେଁ ଏବଂ ବୁଢ଼ାଜଣକ ହେଉଛି ଯୋଡ଼ାଏ ରୁମ୍ ଛଡ଼ାରେ ଥିବା କବି ଜଗତ୍‌କୃଷ୍ଣ ପଣ୍ଡା । ହଁ, ସେଇ ଲୋକ, ସନ୍ଦେହ ନାହିଁ ସେଥିରେ । ମୁଣ୍ଡରେ ଗୋଛାଏ ଧଳା ବାଳ, ପାଣିଚିଆ ଚାହାଣି, ଗେଧେକା ଚେହେରା । କବିମାନେ କୁଆଡ଼େ ଏମିତି ଦେଖାଯିବା କଥା, ଆଉ ଇଏ ହେଉଛି ଗୋଟାଏ 'ପ୍ରସିଦ୍ଧ' କବି (ବୁଦ୍ଧିବାଦୀ ଡଃ ସେନ୍ କବିମାନଙ୍କୁ ହେୟଜ୍ଞାନ କରନ୍ତି), ବେଶ୍, କିନ୍ତୁ ଆର ଜଣକ କିଏ ? କିଏ କହୁଥିଲା ପରା ଯେ ତା' ସ୍ତ୍ରୀ ମରିଯାଇଛି, ଆଉ ସେ ତା' ବିରହରେ ପଳେଇ ଆସିଛି ଏଠିକି, ତା' ପିଲାଛୁଆ ନାତିନାତୁଣୀଙ୍କୁ ଛାଡ଼ି ଦେଇ ? ତା'ହେଲେ ଏଉଟି କିଏ ?

ଡଃ ସେନ୍ ବିରକ୍ତ ହେଲେ । ସେ ଯିଏ ହେଉ, ତୋ ନିଜ ସ୍ତ୍ରୀ କି ଆଉ କାହା ସ୍ତ୍ରୀ, ତୋ ପ୍ରେମକୁ କ'ଣ ଏମିତି ଦେଖେଇ ହେବା ଦରକାର ? ଅସଭ୍ୟ ! ଅଭଦ୍ର !

ଡଃ ସେନ୍ ଆଗେଇ ଗଲେ । କିନ୍ତୁ ଏଇ ସମୟରେ ତାଙ୍କ କାନରେ ବାଜିଲା,

"ହାଓ କିଉଟ୍ ! କ'ଣ କହୁଛନ୍ତି ସେନ୍‌ସାହେବ ?"

ମୁହଁ ଫେରାଇ ଦେଖିଲେ ଯେ ସେ ହେଉଛି ୧୦୨ ନମ୍ବରର ଖଦଡ଼ିଆ ଗାନ୍ଧୀବାଦୀ ନେତା ବଳରାମ ନାଏକ ।

କିଉଟ୍ ? ନା ଅଶ୍ଲୀଳ ? ଡଃ ସେନ୍ କିଛି ଉତ୍ତର ଦେଲେ ନାହିଁ । ଆହୁରି ଗମ୍ଭୀର ଦେଖାଗଲେ ଏବଂ ଆହୁରି ଲମ୍ବା ଲମ୍ବା ପାହୁଣ୍ଡ ପକେଇଲେ ।

ହେଲେ ତାଙ୍କୁ ଭୀଷଣ ବିରକ୍ତ ହେବାକୁ ପଡ଼ିଲା ଯେତେବେଳେ ଆଉ ଗୋଟାଏ ଲୋକ, ୧୦୩ ନମ୍ବରର ସେଇ ଧେଡ଼ିଆ କଣ୍ଟ୍ରାକ୍ଟର ହେବ ପରା, ମାଡ଼ି ଆସୁଛି ତାଙ୍କ ପାଖକୁ, ଆଉ କହୁଛି,

"ଦେଖିଲେ ସାର୍, ଦେଖିଲେ ? ବୁଢ଼ା କବିକୁ ତ ନିଶ୍ଚୟ ଜାଣିଥିବେ, କିନ୍ତୁ ଜାଣନ୍ତି ସେ ସ୍ତ୍ରୀ ଲୋକଟା କିଏ ?"

ମୁଁ ଜାଣେ ନାହିଁ କି ଜାଣିବାକୁ ଚାହେ ନାହିଁ, ଏହି ଭାବରେ ଡଃ ସେନ୍ ହାତ ଟେକିଲେ ତାକୁ ବାରଣ କଲାପରି ଏବଂ ଆହୁରି ଦ୍ରୁତ ଗତିରେ ଆଗେଇ ଗଲେ ।

ଅଭଦ୍ର ! ଅସଭ୍ୟ ! ଏଇ ଯୋଡ଼ାଏ ଶବ୍ଦ କହି ଚାଲିଲେ ମନକୁ ମନ । ଦୃଶ୍ୟର ସେଇ ଦୁଇଜଣ, ତଥା ତା' ଉପରେ କମେଣ୍ଟ୍ ମାରୁଥିବା ଅନ୍ୟ ଦୁଇଜଣଙ୍କ ଉଦ୍ଦେଶ୍ୟରେ ।

କିନ୍ତୁ ଦୃଶ୍ୟଟା ଲାଖି ରହିଲା ତାଙ୍କ ମନରେ । ତାଙ୍କୁ ଛିଗୁଲେଇଲା ପରି । ସତେକି ତାଙ୍କରି ପାଇଁ ଏଇ ଦୃଶ୍ୟ ରଚିତ ହୋଇଥିଲା, ତାଙ୍କୁହିଁ ଗୋଟାଏ ପାଠ ପଢ଼େଇବା ପାଇଁ । ଭଲ ପାଇବାର ପାଠ । ଯାହା ଖାଲି ବୁଢ଼ାବୟସ ଓ ସଭ୍ୟଜଗତର ଦେଶକାଳପାତ୍ରକୁ ଖାତିର୍ କରେ ନାହିଁ ନୁହେଁ, ମଧ୍ୟ ଭଲମନ୍ଦ ଓ ପାପପୁଣ୍ୟ ଏବଂ ଦୃଶ୍ୟର ନିର୍ଦ୍ଦେଶିକା ହେଉଛି ସେଇ ପାପିନୀ ଜଣକ, ତା' ନାଆଁ ନନ୍ଦିତା ଚୌଧୁରୀ । ଆଉ ତା'ର ସାନସୁନ୍ଦର ହସ ଏବେ ମଧ୍ୟ ଲୋଡ଼ୁଛି ତାଙ୍କୁ । ତାଙ୍କର ଦୁଃଖ, ତାଙ୍କର ଅଭାବ ଘୁଞ୍ଚେଇବା ଲାଗି ।

ଖରାବେଳିଆ ଛାଇନିଦ ବେଳେ ମଧ୍ୟ ସେ ହସୁଥିଲା ସେମିତି ତାଙ୍କ ଆଡ଼କୁ ଚାହିଁ । ପାପିନୀ, କରୁଣାମୟୀ ।

ଏବଂ ଉପରବେଳାର ଜାଗ୍ରତ ଅବସ୍ଥାରେ ପୁଣି ଗୋଟାଏ ମହା ଅଘଟଣ ଘଟିବାକୁ ଯାଉଥିଲା ଡଃ ସେନ୍‌ଙ୍କ ଜୀବନରେ । କ'ଣ ହେଲା କି, ଡଃ ସେନ୍ ଅନେଇ ରହିଥିଲେ ଆକାଶ ପୃଥିବୀ ଆଡ଼କୁ ଏବଂ ଦେଖିଲେ ଦି'ଜଣ ସାନଲୋକଙ୍କୁ । ପାହାଡ଼ର କଡ଼େ କଡ଼େ ଚାଲୁଛନ୍ତି, ସେଇ ସରୁ ଅଙ୍କାବଙ୍କା ରାସ୍ତାଟିରେ । ସାତଆଠ ବର୍ଷରୁ ବେଶି ହେବ ନାହିଁ ସେମାନଙ୍କୁ ଏବଂ ସେମାନେ ଅଣ୍ଟାରେ ହାତ ଦିଆଦେଇ ହୋଇ ଚାଲୁଛନ୍ତି । ଢଳି ଢଳି, ହଲି ଦୋହଲି । ମନେହେବ ଏଇ ଯାତ୍ରା ସରିବାର ନୁହେଁ, ତଥା ଏଇ ପ୍ରେମ ।

ଡଃ ସେନ୍‌ଙ୍କ ଦେହ ଉଲୁସି ଉଠିଲା । କିନ୍ତୁ ବିଚିତ୍ର କଥା ତାଙ୍କର ଆଖିରେ ଲୁହ ଜକେଇ ଆସିଲା ତା' ପରେ ପରେ ଏବଂ ତାଙ୍କର ରାଗ ଆସିଲା ତାଙ୍କ ସ୍ୱର୍ଗୀୟ ବାବାଙ୍କ ଉପରେ । ଯାହାଙ୍କ ବିୟୋଗରେ ପ୍ରଥମ ଦି' ଟୋପା ଲୁହ ଝରିଥିଲା ତାଙ୍କ ଆଖିରେ । ...ସାନଭାଇ କି ଭଉଣୀଟିଏ ଆଣି ଦେଇ ପାରିଲ ନାହିଁ ମୋ ପାଇଁ ? ପିଲାଟିଦିନୁ ମୋତେ ଏକୁଟିଆ କରି ଛାଡ଼ିଦେଲ ? ...ହେଲେ ଉଲ୍ଲେଖଯୋଗ୍ୟ ଯେ ସେ ତାଙ୍କ ରାଗ-ଲୁହର ଦୁର୍ବଳତାକୁ ପ୍ରଶ୍ରୟ ଦେଲେ ନାହିଁ । ଅବିଳମ୍ବେ 'ଛିଃ ! ମୁଁ କ'ଣ ଭାବୁଛି ?' ବୋଲି କହି ବାବାଙ୍କୁ କ୍ଷମା ମାଗିଲେ ଏବଂ ପକେଟ୍‌ରୁ ରୁମାଲ୍ ବି' କାଢ଼ିବାକୁ ପଡ଼ିଲା ନାହିଁ, ଉଦ୍‌ଗତ ଅଭଦ୍ର ଲୁହକୁ ପୋଛିବା ଲାଗି ।

## ଦ୍ୱିତୀୟ ଦର୍ଶକ : ବଳରାମ ନାଏକ

ଶହେ ଦୁଇ ନମ୍ବର ରୁମ୍‌ର ପ୍ରବୀଣ ଗାନ୍ଧୀବାଦୀ ନେତା ବଳରାମବାବୁ କେମିତି 'ହାଓ କିଉଟ୍ !' ବୋଲି କହିଲେ ଉପରୋକ୍ତ ଦୃଶ୍ୟ ଦେଖିଲାରୁ ତା' ଟିକିଏ ଅବାସ୍ତବ ବୋଲି ମନେ ହୋଇପାରେ, ସେଯୁଗର ହାରାହାରି ଖଦଡ଼ପିନ୍ଧା ଗାନ୍ଧୀବାଦୀମାନଙ୍କ ଆଚରଣ ଦୃଷ୍ଟିରୁ । କିନ୍ତୁ ସର୍ବଥା ସ୍ମରଣଯୋଗ୍ୟ ଯେ ବଳରାମବାବୁ ଗାନ୍ଧୀବାଦୀ ହେଲେ ମଧ୍ୟ ହାରାହାରି ନୁହଁନ୍ତି ଏବଂ ସେହି ଭିନ୍ନତାକୁ ସେ ସ୍ୱୀକାର କରନ୍ତି, ଖୁସିବାସିଆ ହସଟିଏ ହସି ।

ହଁ, ଇଂରେଜମାନଙ୍କୁ ଭାରତରୁ ହଟାଇବା ଦିଗରେ ତାଙ୍କର ଉଲ୍ଲେଖନୀୟ ଅବଦାନ ଥିଲା ଏବଂ ଭାରତ ସ୍ୱାଧୀନ ହେବାର ଆସି ପଞ୍ଚାବନ ବର୍ଷ ପରେ ମଧ୍ୟ ଇଂରେଜୀ ଭାଷାର ଯେଉଁ ଆଧିପତ୍ୟ ରହିଛି ଆମ ସମାଜରେ, ତାକୁ ସେ ଆଦୌ ସମର୍ଥନ କରନ୍ତି ନାହିଁ । ତା' ବୋଲି ସେ କ'ଣ ଜାଣିଶୁଣି କେଉଁ ସ୍ୱଦେଶୀ ଶୁଦ୍ଧଭାଷା ବ୍ୟବହାର କରିବାକୁ ଚାହିଁବେ, ଯେଉଁଠି ଗୋଟେ ଦି'ଟା ଚଳନ୍ତି ଇଂରେଜୀ ଶବ୍ଦ ବେଶି ବ୍ୟଞ୍ଜନାତ୍ମକ ? ତା' ଛଡ଼ା ବୋଧହୁଏ ସେ ଏଇ ପଦଟା ବହୁବାର ଶୁଣିଛନ୍ତି ତନିର ମୁହଁରୁ । ତେଣୁ ଆପେ ଆପେ ତାହା ତାଙ୍କ ପାଟିରୁ ବାହାରିଗଲା, ଦୃଶ୍ୟର ବୈଚିତ୍ର୍ୟ ତଥା ମାଧୁର୍ଯ୍ୟକୁ ସୂଚାଇବା ଲାଗି ।

ମୋଟ ଉପରେ ଗାନ୍ଧୀବାଦୀ ହେଲେ ମଧ୍ୟ ସେ କଠୋର ନୀତିବାଦୀ ନୁହନ୍ତି । ସେ ଜଣେ ଅତ୍ୟନ୍ତ ଉଦାର ପ୍ରକୃତିର ଲୋକ । ମଧ୍ୟ ଅଗମ୍ଭୀର । ସଦା ହସହସ । ତେଣୁ ଯେଉଁ ଘଟଣା ଦୃଶ୍ୟମାନ ହେଲା ସେଦିନ, ତା'ର ଉଚିତ-ଅନୁଚିତ ବିଚାର ତାଙ୍କର ମନକୁ ଆସିଲା ନାହିଁ ପ୍ରଥମେ । କେବଳ ଆମୋଦ । ''କିସ ପୁଣି ଦେଖା ନ ଯାଏ...'', ଏହି ଭାବରେ । ଅର୍ଥାତ୍ ବୁଢ଼ାବୁଢ଼ୀ ହେଲେ ମଧ୍ୟ ତମେ ଏଭଳି ଦୃଶ୍ୟ ଦେଖାଇ ପାରିଲ ଆମକୁ, ଲୋକଲଜ୍ଜାକୁ ପରୁଆ ନ କରି । ସାବାସ୍ !

ତାଙ୍କର ଏଇ ଭିନ୍ନତା ବିଷୟରେ ସେ ନିଜେ କୁହନ୍ତି ପରା ବନ୍ଧୁମାନଙ୍କୁ, ପରିହାସ ଛଳରେ ? କୁହନ୍ତି - ଆରେ, ହାରାହାରି ତେଢ଼ା ପ୍ରକୃତିର ଗାନ୍ଧୀବାଦୀ ହୋଇଥିଲେ କ'ଣ ମୋର ଏଇ ଦଶା ହୋଇଥାନ୍ତା ? ଗୋଟାଏ ଠିକଣା କୁର୍‌ସୀ ମିଳୁ ନ ମିଳୁ, ଅନେକ ଅଧିକ ସମ୍ମାନ ମିଳି ନ ଥାଆନ୍ତା ? ଯଦି ମୁଁ ମୁହଁଟାକୁ ପିତା ଖାଇଲା ପରି କରିଥାଆନ୍ତି ସବୁବେଳେ, ଆଉ ତେଢ଼ା କଥା କହୁଥାଆନ୍ତି ଆଜିର ଭାରତୀୟମାନଙ୍କ ରଙ୍ଗଢଙ୍ଗ ବିଷୟରେ । ଘରେ, ବାହାରେ ତଥା ଟି.ଭି.ରେ ଯେଉଁସବୁ 'ଖରାପ' କଥାକୁ ପ୍ରଶ୍ରୟ ଦିଆଯାଉଛି, ଯାହାକୁ ଗାନ୍ଧିଜୀ ସହ୍ୟ କରିପାରି ନ ଥାଆନ୍ତେ, ସେହି ସମସ୍ତ ଅନୀତି-ଦୁର୍ନୀତି ବିଷୟରେ । କିନ୍ତୁ ଦୁଃଖର ବିଷୟ ମୁଁ ସେମିତି ହୋଇପାରିଲି ନାହିଁ ।

ମୋର ମନେହୁଏ ଯେ ବାପୁ ବଞ୍ଚିଥିଲେ ବୁଝୁଥାଆନ୍ତେ ଯେ ଯୁଗ ବଦଳିଲାଣି, ତେଣୁ ସେବେକାର ନୀତିକୁ ମୁଠେଇ ଧରିଲେ ଚଳିବ ନାହିଁ । ବୁଝିବାକୁ ପଡ଼ିବ କାହିଁକି ଏମିତି ହେଉଛି ଏବଂ ଦରକାର ହେଲେ ସାଲିସ୍ କରିବାକୁ ପଡ଼ିବ, ଯେମିତିକି ଆମେ ସଭିଏଁ ସୁଖରେ ରହି ପାରିବା । ସର୍ବେ ଭବନ୍ତୁ ସୁଖିନଃ । ଏବଂ ତା'ର ଶେଷକଥା ହେଲା ତମ ମୁହଁର ହସ ଟିକିଏ, ଯାହାର ଛାପ ନିଶ୍ଚୟ ପଡ଼ିବ ତମ ଜାତିଭାଇଙ୍କ ଉପରେ । କିନ୍ତୁ ଏଭଳି ଗୋଟିଏ ଖୁସିବାସିଆ ଗାନ୍ଧିବାଦୀଙ୍କୁ ଉଚ୍ଚ ଆସନ ମିଳିବ କୋଉଠୁ ? ସେ ପରା ତୁମ-ଆମ ପରି ଲୋକଟିଏ ! ଯାହାହେଉ ଭାଇ ମୁଁ ଖୁସିରେ ଅଛି, ବେଶ୍ ଖୁସିରେ ଅଛି ।

ଥରେ ଜଣେ ଟୋକାଟାକଳିଆ ବନ୍ଧୁ (ତାଙ୍କର ଅସୁମାରି ବନ୍ଧୁ, ବୟସ, ଶ୍ରେଣୀ, ତଥା ଲିଙ୍ଗଭେଦ ନିର୍ବିଶେଷେ) ତାଙ୍କୁ ପଚାରିଲା ସିରିୟସ୍ ହୋଇ କଥାଟାକୁ ବୁଝି ନ ପାରିଲାପରି,- ''ମଉସା, ଆପଣ ନୀତିବଦ୍ଧତାରେ ବିଶ୍ୱାସ କରନ୍ତି ନାହିଁ, ତଥାପି ଆପଣ ଗାନ୍ଧିବାଦୀ ବୋଲାଉଛନ୍ତି, ଏଇ ଜିନିଷଟା ମୋ ମୁଣ୍ଡରେ ପଶୁ ନାହିଁ । ଆତ୍ମବିରୋଧୀ ବୋଲି ମନେହେଉଛି । ଯାହାକୁ ଇଂରେଜୀରେ କହନ୍ତି ସେଲ୍‌ଫ-କଣ୍ଟ୍ରାଡିକ୍‌ଟରୀ...''

ମଉସା ହସିଦେଇ କୁହନ୍ତି, ''ଖାଲି ତମେ ନୁହଁ । ମୋର ଧାରଣା ଯେ ଅନେକେ ଏଇ ପ୍ରଶ୍ନ ପଚାରିବାକୁ ଚାହାଁନ୍ତି ମୋତେ, ହେଲେ ପଚାରି ପାରନ୍ତି ନାହିଁ । ସଙ୍କୋଚ ବଶତଃ । ବେଶ୍ । ଶୁଣ ତା'ହେଲେ ମୁଁ ଯାହା କହୁଛି -

ମୁଁ ଅବଶ୍ୟ ଜଣେ ଗାନ୍ଧିବାଦୀ । ଖାଲି ଖଦଡ଼ ପିନ୍ଧେ ବୋଲି ନୁହେଁ ଏବଂ ଖଦଡ଼ପିନ୍ଧା ମୋର ଗୋଟାଏ ତଥାକଥିତ ନୀତି ନୁହେଁ । ମୋତେ ଭଲ ଲାଗେ । ସେବେଳର ଭାବାବେଗ ଓ ପବିତ୍ରତାକୁ ଅନୁଭବ କଲାପରି । ହେଲେ ସେଇ ବ୍ୟକ୍ତିଗତ ଅନୁଭବ ତମପାଇଁ ମଧ୍ୟ ଦରକାର ବୋଲି କହିବି କେମିତି ? ମୁଁ କ'ଣ ଏତେ ବୁଦ୍‌ବକ୍ ହୋଇଛି ?

କିନ୍ତୁ ମନେରଖ, ମୁଁ ଗାନ୍ଧିଦର୍ଶନର ମୂଳନୀତିକୁ ଛୁଡ଼ି ନାହିଁ । ପ୍ରାଣପଣେ ତାକୁ ମୁଠେଇ ଧରିଛି ଏବଂ ସିଏ ମଧ୍ୟ ହେଉଛି ଆମ ଉପନିଷଦର ବାଣୀ, ଯାହା ମହାତ୍ମାଙ୍କର ମୂଳମନ୍ତ୍ର ଥିଲା । ସର୍ବେ ଭବନ୍ତୁ ସୁଖିନଃ । ମୁଁ କହିଛି ଏକଥା ବହୁତ ଥର, ଅନେକ ଅନ୍ୟମାନଙ୍କ ଆଗରେ । ମୋ ଜୀବନଟାଯାକ । ହେଲେ ତା'କୁ ଦୋହରେଇବାରେ ଆଦୌ ଆପତ୍ତି ନାହିଁ ।

ତା'ଛଡ଼ା ୟଙ୍ଗ୍‌ମ୍ୟାନ୍, ଯଦି ମୋ ଗାନ୍ଧିବାଦର ଠୋସ୍ ପ୍ରମାଣ ଖୋଜୁଥାଅ, ତା'ହେଲେ ଇତିହାସର ପୃଷ୍ଠା ଓଲଟାଇପାର । ଗୋଟାଏ ତଥ୍ୟ ମିଳିଯିବ ତମକୁ, ଯଦି ତା' ମିଳି ନ ଥାଏ ଆଜିଯାଏଁ । ଯେ ତମ ମଉସା ସହିଦ ହେବାକୁ ଯାଉଥିଲେ ଅଗଷ୍ଟ

ବିପ୍ଳବ ବେଳେ । ଯେତେବେଳ ଏଇ ବୁଢ଼ାକୁ ମାତ୍ର ପନ୍ଦର ବର୍ଷ ହୋଇଥିଲା ଏବଂ ସେ ମାଟ୍ରିକ୍ ପାସ୍‌କରି କଲେଜ୍‌ରେ ନାଆଁ ଲେଖେଇଥିଲା ତା'ର ଦି'ମାସ ପୂର୍ବରୁ । କିନ୍ତୁ ଗାନ୍ଧିଜୀଙ୍କ ଡାକରା ଶୁଣି ସେ ସ୍ଥିର ହୋଇ ରହିପାରିଲା ନାହିଁ ଏବଂ 'ଭାରତ ଛାଡ଼ !' ବୋଲି ପାଟିକରି ବାହାରି ଆସିଲା ପଦାକୁ, ତା'ର ଆଉ କେତେକ ସାଙ୍ଗମାନଙ୍କ ସାଙ୍ଗରେ ମିଶି । କେମିତି କେଜାଣି ପୁଲିସ୍‌ର ଗୁଳିଟା ତେର୍‌ଛା ହୋଇଗଲା, ନ ହେଲେ ଆଉ କଥା ନ ଥିଲା ! ...

ପ୍ରଶ୍ନଟାକୁ ପଚାରି ଦେଇଥିଲା ସିନା ଗୋଟାଏ ଖିଆଲ୍‌ରେ, ତରୁଣବନ୍ଧୁର ଅଜଣା ନ ଥିଲା ଯେ ମଉସାଜଣକ ତର୍କନିପୁଣ ଏବଂ ନୀତିବଦ୍ଧତାର ଅର୍ଥ ଏଇଆ ନୁହେଁ ସେଇଆ, ଏବଂ ଗାନ୍ଧିଜୀ ପ୍ରକୃତରେ ଏଇଆ ମିନ୍ କରୁଥିଲେ, ସେ ବିଷୟରେ ସେ ତମକୁ ବୁଝେଇ ଦେଇ ପାରିବେ ଘଣ୍ଟା ଘଣ୍ଟା ଧରି, ତମେ ହାଲିଆ ହୋଇ ମୁଣ୍ଡ ଟୁଙ୍ଗାରିବା ଯାଏଁ । ସେଇ ଆଶଙ୍କା ଆସୁଥିଲା ତା' ମନରେ । କିନ୍ତୁ ମଉସା ଯେଉଁଠୁ ତର୍କର ମୋଡ଼ ବଦଳେଇ ଦେଲେ ଏବଂ ତାଙ୍କ ସହିଦପଣିଆର ଅବତାରଣା କଲେ, ସେ 'ଜାଣିଛି ଆଜ୍ଞା, ଜାଣିଛି ସେ ବିଷୟରେ' କହି ହସିଦେଲା ଏବଂ ଅନ୍ୟ କଥା ପକେଇଲା ।

କିନ୍ତୁ ଟୋକା ତୁଚ୍ଛାଟାକୁ ହସିଦେଇ ନ ଥିଲା, ତରୁଣସୁଲଭ ଚପଳତା ଦେଖାଇ । ସେ ପ୍ରକୃତରେ ଶୁଣିଥିଲା କିଛି ସେଇ ଗୁଳିଚାଳନା ବିଷୟରେ ଏବଂ ଗୋଟାଏ ଗୁଜବ୍ ତା' କାନରେ ପଡ଼ିଥିଲା ଯେ ଗୁଳିଟା ତେର୍‌ଛା ହୋଇଗଲା ବୋଲି କହିଲେ ଭୁଲ୍ ହୋଇପାରେ । କାରଣ ତାହା ସମ୍ଭବତଃ ମଉସା ଓ ତାଙ୍କ ସାଙ୍ଗମାନଙ୍କ ପ୍ରତି ଉଦ୍ଦିଷ୍ଟ ନ ଥିଲା । ଗୁଳିର ଉଦ୍ଦେଶ୍ୟ ଥିଲା ତାଙ୍କୁ ଛାନିଆଁ କରି ସେଠୁ ଘଉଡ଼େଇ ଦେବା ଏବଂ ତାହାହିଁ ହେଲା ।

ଯାହାହେଉ ତରୁଣବନ୍ଧୁ ଗାନ୍ଧିଦର୍ଶନ କିମ୍ବା ମଉସାଙ୍କ ସମ୍ଭାବିତ ସହିଦପଣିଆ ବିଷୟରେ ଆଉ କିଛି ପଚାରିବାକୁ ଚାହିଁଲା ନାହିଁ । 'କ'ଣ ମିଳିବ ମୋତେ ସେଥିରୁ ?', ଏଇ ଭାବରେ । ସଚ୍ଚା ଗାନ୍ଧିବାଦୀ ହୁଅନ୍ତୁ ବା ନ ହୁଅନ୍ତୁ, ଅତି ଭଲ ଲୋକଟିଏ, ଆମର ଏଇ ମଉସା ଜଣକ । କେତେଜଣ ନେତାସ୍ଥାନୀୟ ଗୁରୁଜନ ଶୁଣନ୍ତି ଆମ କଥା, ଆମକୁ ପାସଙ୍ଗରେ ପକାନ୍ତି ଏବଂ ଆମର ମନହୁଏ ତାଙ୍କୁ ମଉସା ବୋଲି ଡାକିବାପାଇଁ ? ମଧ୍ୟ ଉପକାରୀ ମଉସାଟିଏ, ଯଦି ସେ ପ୍ରକୃତରେ ତମକୁ ତାଙ୍କ ନିଜର ବୋଲି ଭାବି ନିଅନ୍ତି । ମୁଁ ଯାହା ଶୁଣିଛି ସାଙ୍ଗମାନଙ୍କଠାରୁ । ତରୁଣ ବନ୍ଧୁ ଆଶା କଲା ତାକୁ ମଧ୍ୟ ମିଳିଯିବ କେବେ, ସେଭଳି କୌଣସି ଉପକାର ପାଇବାର ମଉକା ।

କିନ୍ତୁ ମଉସାଙ୍କ ଅଧା-ସହିଦପଣିଆ ବିଷୟରେ କ'ଣ ଟୋକା ଜାଣିଥିଲା ସବୁକଥା ? ଜାଣିଥିଲା ଯେ ପନ୍ଦରବର୍ଷିଆ ବଳରାମ ନାଏକ ସେଇ ବିକ୍ଷୁବ୍ଧ ଯୁବଜନତାର ଆଗ ଧାଡ଼ିରେ

ଥିଲା, ପ୍ରତିଷ୍ଠିତ ଯୁବନେତା ନବୀନ ସାହୁଙ୍କ କାନ୍ଧରେ କାନ୍ଧ ମିଳାଇଲା ପରି ? ଏବଂ ପ୍ରକୃତରେ ବନ୍ଧୁକ ଦେଖାଇ ମାଡ଼ି ଆସୁଥିବା ପୁଲିସ୍‌ର ଗୁଳିମାଡ଼କୁ ଛାତି ଦେଖାଇଥିଲା ? ଏହିପ୍ରକାର ସହିଦସୁଲଭ ବୀରତ୍ୱର ଭାବ କେତେଜଣଙ୍କର ଥାଏ ସେଇ ବୟସରେ ?

ମଧ୍ୟ ସେ କେମିତି ଜାଣିବ ଯେ ମଉସା ସେଇ ଅଧା-ସହିଦପଣିଆର ସ୍ମୃତିକୁ ତାଙ୍କ ମନରୁ କେବେହେଲେ ପୋଛିଦେଇ ପାରିବେ ନାହିଁ, ତାଙ୍କ ଦୀର୍ଘଜୀବନର ସୁଖଦୁଃଖ ଅନୁଭୂତି ଯାହା ହୋଇଥାଉ ପଛେ ? ଜାଣିବ ନାହିଁ ଯେ ପୋଲିସ ସେମାନଙ୍କୁ ଘଉଡ଼େଇ ଦେଇ ଫେରିଗଲା ପରେ ବଳରାମକୁ ଯେ ସବୁଠାରୁ ଜବରଦସ୍ତ ବଧେଇ ଦେଇଥିଲା, ସେ ହେଉଛି ନବୀନଭାଇଙ୍କ ସାନଭଉଣୀ ସୁଲେଖା । ସୁଲେଖା ଧାଇଁ ଯାଇଥିଲା ତା' ପାଖକୁ, ଆଉ ତାକୁ ପ୍ରାୟ କୁଣ୍ଢେଇ ପକେଇ କହିଥିଲା - ‘‘ଟିକକରେ ବଞ୍ଚିଗଲ ବଳିଭାଇ, ନ ହେଲେ ତମେ ସହିଦ ହୋଇଯାଇ ଥାଆନ୍ତ ! ଆଉ ଆମକୁ ଯଥେଷ୍ଟ ଫୁଲମାଳ ମିଳିଥାଆନ୍ତା କି ନାହିଁ ସନ୍ଦେହ, ତମ ଫଟୋର ଗଳାରେ ପିନ୍ଧେଇବା ପାଇଁ । କିନ୍ତୁ ତମେ କ'ଣ ଭାବିଛ ଏତିକିରେ ତମ କାମ ସରିଗଲା, ଆଉ ଆମେ ତମକୁ ଛାଡ଼ିଦେବୁ ଏଣିକି ?'' କହି ହସିଲା ଖିଲି ଖିଲି ହୋଇ । କିଏ ବୁଝିବ କିଭଳି ରୋମାଞ୍ଚର ଅନୁଭବ ଆସିଥିଲା ସେତେବେଳେ ବାଳକ ବଳରାମର ଦେହରେ ଓ ମନରେ ? ଯେଉଁ ଅନୁଭବ ଏବେ ମଧ୍ୟ ଲିପିବଦ୍ଧ ହୋଇ ରହିଛି ବୃଦ୍ଧ ବଳରାମବାବୁଙ୍କ ହୃଦୟରେ, କେଉଁଠି ହେଲେ, ହୁଏତ କେଉଁ ଅନ୍ଧାରି କୋଣରେ, ତେଣୁ ତାହା ସୁଦୃଶ୍ୟ ନୁହେଁ ?

କିନ୍ତୁ ବଳରାମବାବୁ ଗୋଟିଏ ଭୁଲ୍ କଥା କହିଲେ ସେ ଟୋକାକୁ, ତଥ୍ୟ ହିସାବରେ । ମିଛ ନୁହେଁ, ଭୁଲ୍ । ଅନୁମାନଗତ ଭୁଲ୍ । ହଁ, ସେ କାଳକ୍ରମେ ନିଜକୁ ଗାନ୍ଧିବାଦୀ ବୋଲାଇଲେ ଏବଂ ସେଥିର ଯଥେଷ୍ଟ କାରଣ ଅଛି । କିନ୍ତୁ ସେଇ ସହିଦପଣିଆ ବେଳେ ସେ ଯଥାର୍ଥରେ ଗାନ୍ଧିବାଦୀ ନ ଥିଲେ । ଥିଲେ କେବଳ ବିଦ୍ରୋହୀ ଏବଂ ନବୀନଭାଇ ଥିଲେ କିଶୋର ବଳରାମର ଆଦର୍ଶ । ଏକା କଲେଜ୍‌ରେ ପଢୁଥିବା ନବୀନଭାଇ ଯେ ତା'ଠାରୁ ଦି'ବର୍ଷ ସିନିଅର୍ ଥିଲେ । ତେଣୁ ନବୀନଭାଇ ଯେତେବେଳେ ‘ଭାରତଛାଡ଼’ ପ୍ଲାକାର୍ଡ଼ଟାଏ ଧରି ବାହାରି ଆସିଲେ ପଦାକୁ, ‘ଇନ୍‌କିଲାବ ଜିନ୍ଦାବାଦ୍ !’ର ଗର୍ଜନଟାଏ କରି, ବଳରାମ ଭିଡ଼ିଗଲେ ତାଙ୍କ ସାଙ୍ଗରେ । ସେଇଠୁ ଆଉ ପାଞ୍ଚ-ଛଅଜଣ ହଷ୍ଟେଲ୍ ପିଲା ଲାଗିଗଲେ ତାଙ୍କ ପଛକୁ ଏବଂ ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଯେ ସୁଲେଖା କୋଉଠୁ ହେଲେ ଆସି ପହୁଞ୍ଚିଯିବ ଭାଇଙ୍କ ସାଙ୍ଗରେ ଏକାଠି ହେବାପାଇଁ । ଆଉ ସେ ଦେଖିବ ଯେ ବଳିଭାଇ ମଧ୍ୟ ରହିଛି ସେଠି, ଭାଇର ଡାହାଣ ହାତ ପରି । ସେମାନଙ୍କୁ ରକ୍ତମୁଖା ପୁଲିସ୍‌ର ମୁହାଁମୁହିଁ ହେବାକୁ ପଡ଼ିପାରେ, ଏଇ ସମ୍ଭାବନା ମଧ୍ୟ ତାଙ୍କ ମନରେ ନ ଥିବ ବୋଲି କହିହେବ କେମିତି ?

ଅପ୍ରତ୍ୟାଶିତ ଥିଲା କେବଳ ସେଇ ନିକଟ - ସହିଦପଣିଆର ଅବବୋଧ, ଏବଂ ସୁଲେଖାର ନିକଟ- ଆଲିଙ୍ଗନ । ଏକ ଅପୂର୍ବ ଏବଂ ଅବିସ୍ମରଣୀୟ ସାର୍ଥକତା ।

ଏବଂ ସେଇ ସମୟରେ ଏକ ସୁଲଳିତ, ହେଲେ ସୁସ୍ପଷ୍ଟ ଗୁଞ୍ଜରଣର ସୃଷ୍ଟି ହୋଇଥିଲା କିଶୋର ବଳରାମର ମନରେ -

ଆଇ ଲଭ୍ ସୁଲେଖା, ସୁଲେଖା ଲଭ୍‌ସ ମି !

ତେର ବର୍ଷ ବୟସର ସୁଲେଖା ସାହୁକୁ ସୁନ୍ଦରୀ ବୋଲି କହିହେବ ନାହିଁ । ମାନେ ଏଭଳି ଏକ ସୁଦୃଶ୍ୟା କିଶୋରୀ ଯାହାକୁ ସ୍କୁଲ୍ କଲେଜ୍‌ର କିଶୋର ଓ ନବତରୁଣୀମାନେ ସହଜେ 'ଲଭ୍' କରିବାକୁ ଚାହିଁବେ । ଏକେ ସେ ତନ୍ୱୀ ନୁହେଁ । ମୋଟା ନ ହେଲେ ମଧ୍ୟ ବେଶ୍ ହୃଷ୍ଟପୁଷ୍ଟ ଏବଂ ସୁନ୍ଦର ଦାନ୍ତ ଦି'ପାଟି ଏବଂ ଉଜ୍ଜ୍ୱଳ ଆଖି ଦି'ଟା ପାଇଥିଲେ କ'ଣ ହେବ, ଚେପ୍‌ଟାନାକୀ । ସର୍ବୋପରି ନାରୀସୁଲଭ ସଂଭ୍ରମ କ'ଣ ଟିକିଏ ହେଲେ ନାହିଁ ଝିଅଟା ପାଖରେ ? କଥାକଥାକେ ଅଣ୍ଟାରେ ହାତ ଦେବ, ହୋ' ହୋ' ହୋଇ ହସିବ ଏବଂ ହଠାତ୍ କ'ଣ ବୋଲି କ'ଣ କରିବସିବ, ଯାହା ମୋଟେ କୋଉ ଓଡ଼ିଆ ଘର ଝିଅକୁ, କହିବାକୁ ଗଲେ ଭାରତୀୟ ଝିଅକୁ, ଶୋଭାପାଏ ନାହିଁ । ଧର ଏଇ ଯେଉଁ କାମଟା କଲା ଏଇକ୍ଷଣି ତା' ବଳିଭାଇକୁ କୁଣ୍ଢେଇ ପକେଇଲା - ଛିଃ ! ସିଏ ତୋର କୋଉ ନିଜ ଭାଇ ନୁହେଁ । ଲେଖାଯୋଖା ଭାଇ ବି ନୁହେଁ । ତୋ ବାପା ଗଣେଶ୍ୱର ସାହୁ ଆଉ ବଳରାମର ବାପା ବିରଞ୍ଚି ନାଏକ ସହପାଠୀ ଥିଲେ ଏବଂ ସେଇ ସୂତ୍ରରେ ଅବଶ୍ୟ କିଛି ଘନିଷ୍ଠତା ଅଛି ତମ ଦି' ପରିବାରଙ୍କ ଭିତରେ, ତା' ବୋଲି ଏମିତି ଅଲାଜୁକୀ ନ ହେଲେ ଚଳି ନ ଥାଆନ୍ତା ? ଆଉ ତୁ ଯେ ନିହାତି ପିଲା ହୋଇ ରହିଛୁ ତା' ନୁହେଁ, ତୋ ବଢ଼ିଲା ଦେହର ଚେହେରାରୁ ଯାହା ସ୍ପଷ୍ଟ ଜଣାପଡ଼ିଯାଉଛି । ଏହି ମର୍ମରେ ଅନ୍ୟ କିଶୋର-ତରୁଣମାନେ ନାନାଦି ଟିପ୍‌ପଣୀ କରିଥିବେ ସେଦିନ ସୁଲେଖା ଉପରେ । ମନେ ମନେ ତଥା ପରସ୍ପର ସହିତ । ହୁଏତ ଜଣେ ଅଧେ ବଳରାମକୁ ମଧ୍ୟ 'ବିଚରା' ବୋଲି କହିଥିବେ, ଯେ ସେ ଏଇ ଉଦଣ୍ଡୀର ପାଲରେ ପଡ଼ିଯାଇପାରେ । ଯଦିଓ ସେଥିରେ ଯତ୍‌ସାମାନ୍ୟ ଈର୍ଷାଭାବ ନ ଥିବ ନୁହେଁ ।

ସୁଲେଖା କେଉଁ ଦୃଷ୍ଟିରେ ଦେଖୁଥିଲା ସେତେବେଳେ ତା' ବଳିଭାଇକୁ ? ତାକୁ 'ଲଭ୍' ବୋଲି ହୁଏତ କୁହାଯାଇ ନ ପାରେ (ସେଇ ମନୋଭାବ ବିଷୟରେ ସେ ସଚେତନ ନ ଥିଲା ସେତେବେଳେ) କିନ୍ତୁ ବଳିଭାଇଟି ତାକୁ ବେଶ୍ ଭଲ ଲାଗିଥିଲା ବୋଲି କହିଲେ ଭୁଲ୍ ହେବ ନାହିଁ । ... ପାଠୁଆ ପିଲା, ହେଲେ ମଉନମୁହାଁ ନୁହେଁ । ଆଉ ନ ହସିଲେ ବି ହସଟିଏ ତା' ଓଠରେ ବସା ବାନ୍ଧି ରହିଛି ବୋଲି ମନେହୁଏ ଏବଂ ସବୁଠାରୁ କାବା କଥା ହେଉଛି ସେ ଯେମିତି ଗୋଟାଏ ଚେଲା ବନି ଯାଇଛି ଆମ ଭାଇଙ୍କର । ଯଦିଓ

ତା'ର ବ୍ୟାକ୍‌ଗ୍ରାଉଣ୍ଡ ପୂରାପୂରି ଭିନ୍ନ ଆମଠୁଁ । ମୋ ବାପା ମେହେନତୀ ଚାଷୀ ପରିବାରର ପିଲା, ଆଉ ବିରଞ୍ଚି ମଉସା ହେଉଛନ୍ତି ଜଣେ ପେଟୁଆ ଜମି ମାଲିକ । ଅଳ୍ପବହୁତ ପାଠ ପଢ଼ିଛନ୍ତି ଦି'ଜଣ ଯାକ ହେଲେ ବାପା ସାମାନ୍ୟ ଦୋକାନୀଟିଏ ହୋଇ ରହିଗଲେ । ଯୋଉ ଖଟିଖିଆକୁ ସେଇ ଖଟିଖିଆ । କିନ୍ତୁ ମଉସା ଗୋଡ଼ ଲମ୍ବେଇ ବସି ରହିଲେ ତାଙ୍କ ଘରେ, ଆଉ ତାଙ୍କ ଜମିରୁ ଲାଭ ଉଠେଇଲେ । ଭାଇଙ୍କଠାରୁ ସେ ଶୁଣିଛି ଏଇସବୁ କଥା । କିନ୍ତୁ ତଥାପି ଦେଖ ଏଇ ବଳିଭାଇ ଜଣକୁ । କେମିତି ମିଶି ଯାଇଛି ଆମ ସାଙ୍ଗରେ ! କେତେ 'ଡାଉନ୍ ଡାଉନ୍ !' 'ଇନ୍‌କିଲାବ୍ !' ଆଦି ଗର୍ଜନ ନ କରିଛି, ତାଳଦେଇ ଆମ ସାଙ୍ଗରେ ! ହେଲେ ଅନ୍ୟବେଳେ ପାଠୁଆ ପିଲାଟିର ଥିରିକଥା ଆଉ ସଦାବିହାରୀ ହସହିଁ ଖାଲି ତମ ଆଖିରେ ପଡ଼ିବ । ଆଉ ମନେହେବ ନାହିଁ ଯେ ସେ କେବେହେଲେ ଆଉ କାହା ଉପରେ ରାଗିପାରିବ, ସେ ଇଂରେଜ ସରକାର ହେଉ ବା ଆଉ କିଏ । ସତେ ମଜାର ପିଲାଟିଏ ଆମର ଏଇ ବଳିଭାଇ ଜଣକ !

ପୁଅ ବଳରାମର ସରକାର-ବିଦ୍ରୋହୀ କାରବାର ବିରଞ୍ଚିବାବୁଙ୍କୁ ଅବଶ୍ୟ ଭଲ ଲାଗି ନ ଥିଲା, ତା'ର ପାଠପଢ଼ା ଓ ଭବିଷ୍ୟତ ଦୃଷ୍ଟିରୁ । ସେ ତା'କୁ ଚିଆରିଛନ୍ତି ସେ ବିଷୟରେ । କିନ୍ତୁ 'ଭାରତଛାଡ଼' ଆନ୍ଦୋଳନକୁ ନେଇ ଉପରୋକ୍ତ ଘଟଣା ଘଟିବା ପୂର୍ବରୁ ସେ ବିଶେଷ କଠୋର ହୋଇପାରି ନ ଥିଲେ ତା' ଉପରେ । କାରଣ ସେ ମଧ୍ୟ ଥିଲେ ଜଣେ ଦେଶପ୍ରେମୀ ଏବଂ ଗାନ୍ଧିଜୀଙ୍କ ବଡ଼ ଫଟୋଟିଏ ଟଙ୍ଗା ହୋଇଥିଲା ତାଙ୍କ ଶୋଇବା ଘରେ । ସେଇ ଫଟୋ ଓ ବାପାଙ୍କଠାରୁ ଗାନ୍ଧିଜୀଙ୍କ ବିଷୟରେ ଶୁଣିଥିବା ନାନାଦି ଉପାଖ୍ୟାନ ଥିଲା କିଶୋର ବଳରାମର ପ୍ରଥମ ପ୍ରେରଣା ତା'ର ଦେଶପ୍ରେମକୁ ଜଗାଇବାରେ । କିନ୍ତୁ ଜାଗିଉଠିଲେ ମଧ୍ୟ ତାହା ବୋଧହୁଏ ନୀରବ ନିଷ୍କ୍ରିୟ ହୋଇ ରହି ଯାଇଥାଆନ୍ତା, ସେବେଳର ସର୍ବସାଧାରଣ ଦେଶପ୍ରେମୀ ପିଲାଙ୍କ ପରି । ତାକୁ ଉତ୍ତେଜିତ କଲେ ସେଇ ଭାଇଭଉଣୀ ଦି'ଜଣ, ନବୀନଭାଇ ଓ ସୁଲେଖା । ବିଭିନ୍ନ ଭାବରେ । ମନେହେବ ଯେ ସୁଲେଖାଜନିତ ଉତ୍ତେଜନାରେ କେବଳ ଦେଶମାତୃକାକୁ ସୁଖ ଦେବାର ପ୍ରତିଶ୍ରୁତି ନ ଥିଲା, ମଧ୍ୟ ଥିଲା ସୁଲେଖାର ଆହୁରି ପାଖକୁ ଆସିପାରିବାର ସୁଖ । ଏହେତୁ ସେଦିନର ସେଇ ନିକଟ-ଆଲିଙ୍ଗନରେ ଯେଉଁ ରୋମାଞ୍ଚ ଜାତ ହେଲା ତା'ର ଦେହମନରେ ଏବଂ ତାକୁ ନେଇ ସେ ନିଜକୁ ଶୁଣାଇଲା ସେଇ ପ୍ରେମଗୁଞ୍ଜରଣ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏଇ ମୁହୂର୍ତ୍ତଟି ଅପେକ୍ଷା କରିଥିଲା ଆସିବାପାଇଁ, ବଳରାମର ମନରେ । ସୁଲେଖାର 'ଭଲ ଲାଗିବା' କେବେ ଓ କେମିତି 'ଭଲ ପାଇବା' ନାମକ ଭାବରେ ପରିଣତ ହୋଇଥାଆନ୍ତା, ସେକଥା ଭିନ୍ନ ।

ଯଥାକ୍ରମେ ଦିହିଁଙ୍କି ଦିହେଁ ସେଇ ବୟସରେ ପହୁଞ୍ଚିଲେ, ଯାହାକୁ ନବତରୁଣିମା କୁହାଯିବ । ବଳରାମଙ୍କୁ ଉଣେଇଶ ବର୍ଷ, ସେ ଇତିହାସରେ ଉଚ୍ଚ ସେକେଣ୍ଡ କ୍ଲାସ୍ ଅନର୍ସ୍

ପାଇ ଏମ୍.ଏ. ପଢ଼ିବାକୁ ବାହାରିଛନ୍ତି, ଆଲାହାବାଦ ୟୁନିର୍ଭର୍ସିଟିରେ । ସେଠି କୁଆଡ଼େ ନାମଜାଦା ଇତିହାସ ପ୍ରଫେସର୍‌ମାନେ ଅଛନ୍ତି । ସୁଲେଖା ବି.ଏ. ପଢୁଛି । ଅନେକ ବିକ୍ଷୋଭ, ଶୋଭାଯାତ୍ରା ତଥା ସାମ୍ପ୍ରଦାୟିକ ହାଣକାଟ ପରେ ଭାରତ କାଲି ସକାଳେ ସ୍ୱାଧୀନ ହେବାକୁ ଯାଉଛି । ଦିହେଁ ଆସନ୍ନ ସ୍ୱାଧୀନତା ବିଷୟରେ ଗପୁ ଗପୁ ନିହାତି ପାଖାପାଖି ହୋଇ ଆସିଲେଣି ବିରଞ୍ଚିବାବୁଙ୍କ ଘର ଡ୍ରଇଂରୁମ୍‌ର ସୋଫା ଉପରେ । ନିଛାଟିଆ ଖରାବେଳ । ବିରଞ୍ଚିବାବୁ ଓ ତାଙ୍କ ସ୍ତ୍ରୀ ଘରେ ନାହାନ୍ତି, ଯାଇଛନ୍ତି କେଉଁ ସମ୍ପର୍କୀୟର ଘରେ ଦିନ ବିତାଇବା ପାଇଁ । ସେଇ ସମୟରେ ବଳରାମଙ୍କ ମନରେ ଧ୍ୱନିତ ହୋଇ ଆସୁଥିବା ପ୍ରେମଗୁଞ୍ଜରଣ ହଠାତ୍ ସାହସ ପାଇଲା ପଦାକୁ ବାହାରି ଆସିବା ପାଇଁ । ସେ ସୁଲେଖାର ହାତକୁ ଧରି ପକାଇ କହିଲେ,

"ସୁଲୁ, ମୋତେ ବାହା ହେବ, ମୁଁ ଆଲାହାବାଦରୁ ଏମ୍.ଏ. ପାସ୍ କରି ଫେରିଆସିଲା ପରେ ?"

"ଏଁ ? ମୁଁ ତମର ସୁଲୁ ହୋଇଗଲିଣି କେବେଠୁଁ ?" ଏଇଆ କହି ସୁଲେଖା ହୋ' ହୋ' ହୋଇ ହସି ଉଠିଲା । ତା'ପରେ ବଳରାମଙ୍କ ନାକକୁ ଚିମୁଟି ଏବଂ ନିଜ ଓଠକୁ ଗୋଜ କରି କହୁଛି, "ଆରେ, ମୋ ବଳୀୟାନ୍‌ଭାଇ ମୋତେ ଯଦି ଟେକି ନେଇ ପଳେଇବ କୁଆଡ଼େ, ମୋର ଆଉ ଗତି କ'ଣ ଅଛି ?"

ଏଇ ପ୍ରେମନିବେଦନ ଏବଂ ସେଥିର ସୁଲେଖାସୁଲଭ ସ୍ପେଶାଲ୍ ଅଙ୍ଗୀକାର ପରେ ଆଉ କ'ଣ ଘଟିଥାଆନ୍ତା କହିହେବ ନାହିଁ । କାରଣ ବାହାରୁ କେଉଁ ଆଗନ୍ତୁକ ଆସିବାର ଶବ୍ଦ ଶୁଣାଗଲା ଏବଂ ସେମାନେ ସଜାଡ଼ି ନେଲେ ନିଜକୁ । କିନ୍ତୁ ଯେଉଁ ଆନନ୍ଦହସର ଢୁଆର ଏତେ ଉପରକୁ ଉଠେଇଥିଲା ସୁଲେଖାକୁ, ତା' ସହଜେ ତଳକୁ ଖସି ଆସିବାକୁ ଚାହିଁଲା ନାହିଁ । ହାବୁକାଏ ହସ ଫିଟି ପଡ଼ିଥିଲା ବାହାରଲୋକ କେତେଜଣ ଘରେ ଆସି ପହୁଞ୍ଚି ଗଲା ପରେ ମଧ୍ୟ ଏବଂ ବଳରାମ ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ ପୁଣି ମୁଗ୍ଧ ହେଲେ ପ୍ରେମାସ୍ପଦାର ପ୍ରାଣପ୍ରାଚୁର୍ଯ୍ୟରେ ।

କିନ୍ତୁ ମୁଗ୍ଧ ହେଲେ ସିନା, କ୍ରମଶଃ ତାଙ୍କର ବଳ ପାଇଲା ନାହିଁ ପ୍ରେମାସ୍ପଦା ତଥା ଉଦୀୟମାନ ନାରୀନେତ୍ରୀ ସୁଲେଖା ସାହୁଙ୍କ ପାଖରେ ପହୁଞ୍ଚିବା ପାଇଁ, ତାଙ୍କୁ ଟେକି ନେଇ ପଳେଇବା ଦୂରର କଥା । କାରଣ ସୁଲେଖାଙ୍କ ଦେଶପ୍ରେମୀ ଢଙ୍ଗ ଏକ ଉଗ୍ରରୂପ ଧାରଣ କଲା ବିପ୍ଳବୀ ନେତା ଓ ବଡ଼ଭାଇ ନବୀନ ସାହୁଙ୍କ ନେତୃତ୍ୱରେ, ଯାହା ସାଙ୍ଗରେ ସେ ତାଳ ଦେଇ ପାରିଲେ ନାହିଁ । ଆଲାହାବାଦ୍‌ରୁ ଏମ୍.ଏ. ପାସ୍ କରି ଫେରିଲା ପରେ ବଳରାମ ଦେଖିଲେ ଯେ ସୁଲେଖାର ପାଠପଢ଼ା ସରିଗଲାଣି । ବିଦ୍ରୋହିଣୀ ବି.ଏ.ଟା ବି ପାସ୍ କରିପାରିଲା ନାହିଁ । ବେଳ କାହିଁ ସେଥିପାଇଁ ? ସେ ସକ୍ରିୟ ରାଜନୀତିରେ ଯୋଗ ଦେଇଛି ଏବଂ ଏଭଳି ଏକ ରାଜନୀତି ଯାହାର ତିଳେ ହେଲେ ଆସ୍ଥା ନାହିଁ

ଭାରତର ନବଲବ୍ଧ ସ୍ୱାଧୀନତା ଉପରେ । କିଏ ସ୍ୱାଧୀନ ହେଲା ? ହଁ, ପେଟୁଆକୁ ଆହୁରି ସୁବିଧା ସୁଯୋଗ ମିଳିଲା ଆରାମ କରିବାପାଇଁ, ଗାନ୍ଧିବୁଢ଼ା ତାକୁ 'ହାରାମ' ବୋଲି କହିଥାଉ ପଛେ । କିନ୍ତୁ ଏଣିକି ଭୋକିଲାର ପେଟ ପୂରିଯିବ ବୋଲି ମନେହେଉଛି କି ? ହେଉ ନାହିଁ । କାରଣ ଆରାମରେ ଶୋଇଥିବା ପେଟୁଆର ଶୋଷଣ ଅବ୍ୟାହତ ରହିଛି । କିନ୍ତୁ କିଏ ବନ୍ଦ କରିବ ତାକୁ ? ଏଇ ଆମର ନୂଆ ସରକାର, ଦେଶୀ ସରକାର, ଯେଉଁମାନେ ସେଇ ଶୋଷକ ଦଳର ହାତବାରିସି ? ହୁଁଃ ! ନାଇଁ ଭାଇ, ଉପାୟ କେବଳ ଗୋଟିଏ । ପ୍ରତ୍ୟକ୍ଷ ସଂଗ୍ରାମ । ସେଇ ସଂଗ୍ରାମର ନେତୃତ୍ୱ ନେଇ ନବୀନ ସାହୁ ଘୂରି ବୁଲୁଛନ୍ତି ଦଳିତଙ୍କ ସଂସାରରେ, ତାଙ୍କୁ ଯଥାର୍ଥ ସ୍ୱାଧୀନତା ଆଣିଦେବା ଲାଗି ଏବଂ ତାଙ୍କ ନିବେଦିତା ଭଉଣୀ ସୁଲେଖା ଚାଲିଛି ତାଙ୍କ ପଛେ ପଛେ, ଏକ ବିଶ୍ୱସ୍ତ ସେନାପତିର ଭୂମିକାରେ । ଯୁଦ୍ଧଂ ଦେହି । କେତେବେଳେ କୋଉଠି ଅଛି, କୋଉ ବଣଜଙ୍ଗଲରେ କି ଅପାଣିଆ ବିଲଗହୀରରେ, ତା' ବି ଜାଣିହେବ ନାହିଁ ସହଜେ ।

ବଳରାମ ନିଜକୁ ବୁଝେଇବାକୁ ଚାହିଁଲେ ଯେ ସୁଲେଖା-ନବୀନଭାଇଙ୍କର ଏଭଳି କାର୍ଯ୍ୟକଳାପ ଅସମ୍ଭାବିତ ନ ଥିଲା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ତେଣୁ ଅଧୀର ହୁଅ ନାହିଁ, ତା' ସାଙ୍ଗରେ ଯଥାବିଧି ଦେଖା ହୋଇପାରୁ ନାହିଁ ବୋଲି । କିନ୍ତୁ ପ୍ରେମକଥା ଛାଡ଼, ଦେଶପ୍ରେମୀ ବଳରାମଙ୍କର ଇଚ୍ଛା ହେଉଥିଲା ତାକୁ ଓ ସେଇ ଦଳର ଭାଇଭଉଣୀମାନଙ୍କୁ (ନବୀନଭାଇଙ୍କ ଆଗରେ ହୁଏତ ଟିକିଏ ଅସୁବିଧା ହୋଇପାରେ ପୂର୍ବର ଅଭ୍ୟାସ ଯୋଗୁଁ) ବୁଝେଇବା ଲାଗି ଯେ ଆଗେ ଆମ ଗଣତାନ୍ତ୍ରିକ ସରକାରଙ୍କୁ ଟିକିଏ ଚାନ୍ସ୍ ଦିଅାଯାଉ ତଳିଆ ଶ୍ରେଣୀର ଲୋକମାନଙ୍କୁ ଯଥାଶୀଘ୍ର ଉପରକୁ ଉଠେଇବାପାଇଁ । କିଓ, ଆସେମ୍ଲିରେ କ'ଣ ଯଥେଷ୍ଟ ପାଟିତୁଣ୍ଡ କରିହେବ ନାହିଁ, ଯେଉଁଥିରେ ସରକାର ବାଧ୍ୟ ହେବେ ସେଇ ତଥାକଥିତ ଶୋଷକମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବା ପାଇଁ ? ରାତି ଅଧରେ କେଉଁ ପେଟୁଆର ଖଳାବାଡ଼ି ଉପରେ ଚଢ଼ଉ କରି ଧାନଚାଉଳ ଲୁଟ୍ କରିନେବା କ'ଣ ନିହାତି ଜରୁରୀ ? ହଁ ସୁଲେଖା, ତୋ ବଳିଭାଇର ଅଜଣା ନୁହେଁ ତୋର ସେଇ ନାହିଁ-ନ-ଥିବା ଆବେଗ ଏବଂ ସେ ଅନେଇ ବିସିଛି କେବେ ନିଜକୁ ମିଶେଇ ଦେବ ତା' ସାଙ୍ଗରେ । ପରମ ଉଲ୍ଲାସରେ । କେବଳ ଦେଶକାମ କରିବା ପାଇଁ ନୁହେଁ, ମଧ୍ୟ ପୂରାପୂରି ଏକାଠି ହେବାପାଇଁ ତା' ସୁଲୁ ସାଙ୍ଗରେ, ନାକଚିମୁଟା ସମେତ । କିନ୍ତୁ କାହିଁକି ଏଇସବୁ ହିଂସାକାଣ୍ଡ ? ବୁଝିପାରୁନୁ କେତେ କ୍ଷତି ହେଉଛି ସେଥିରେ ତୋର, ମୋର, ଦେଶର, ଆମ ସମସ୍ତଙ୍କର ? ବଳରାମଙ୍କର ଭାରି ଇଚ୍ଛା ହୁଏ ଏହି ଭାବରେ କିଛି ଆଳାପ କରିବାପାଇଁ ସୁଲେଖା ସାଙ୍ଗରେ । ଅନ୍ତତଃ ଏମିତି କେତୋଟି କଥା କହିବାପାଇଁ, ସେଥିରେ ପ୍ରେମର ବାସ୍ନା ଥାଉ ବା ନ ଥାଉ । କିନ୍ତୁ ତାଙ୍କ ମନକଥା ମନରେ ରହିଯାଏ । ଯାଇ ହୁଏ ନାହିଁ ତା' ପାଖକୁ ।

ଏଣେ ବିରଞ୍ଚିବାବୁ ତାଙ୍କର ଏକମାତ୍ର ପୁତ୍ରସନ୍ତାନ (ତିନି ଝିଅରେ ଗୋଟିଏ ପୁଅ) ପାଇଁ ଚିନ୍ତିତ । ଟୋକାଟା ବ୍ରିଲିୟାଣ୍ଟ୍ ନ ହେଲେ ମଧ୍ୟ, ତା'ର ରେକର୍ଡ୍ ହାରାହାରି ଠାରୁ ବେଶ୍ ଊର୍ଦ୍ଧ୍ୱରେ । କିନ୍ତୁ ସେ କୋଉ ଚାକିରିରେ ପଶିବାକୁ ଚାହୁଁ ନାହିଁ । ଲ' ପଢ଼ିଲା, ଭଲରେ ପାସ୍ କଲା, ହେଲେ ଓକିଲ ହେବାକୁ ନାରାଜ । କହୁଛି ବାପା, ମୁଁ ମୋ ମନଲାଖି କାମ ପାଇଁ ଅପେକ୍ଷା କରିଛି । ମୁଁ କ'ଣ ଏତେ ଅଯୋଗ୍ୟ ଯେ ମୋ ପେଟ ଅପୋଷା ରହିଯିବ ବୋଲି ଆପଣ ଭାବୁଛନ୍ତି ? ପୁଣି ବାହାଘର ନାଆଁ ଧରୁ ନାହିଁ । ସେହେତୁ ତାଙ୍କ ମନରେ ପାପ ଛୁଉଁଛି । ସନ୍ଦେହ ହେଉଛି ଯେ ସେଇ ନିଆଁଗିଲା ଭାଇଭଉଣୀ ଦି'ଜଣ ତଥାପି ତାକୁ ତାଙ୍କ ଆୟତ୍ତରେ ରଖିଛନ୍ତି । ଦେଶପ୍ରେମର ଭେଳିକି ଦେଖଉଛନ୍ତି, ଯାହା ସରକାରୀ ଚାକିରି କିମ୍ବା କୋଉ ଝାଲବୁହା ଧନ୍ଦା ସାଙ୍ଗରେ ଖାପ୍ ଖାଇବ ନାହିଁ । ଆଉ ପୈତୃକ ଜମିବାଡ଼ି କ'ଣ ଯଥେଷ୍ଟ ନୁହେଁ ଦୈନିକ ଭାତ ଦି' ମୁଠା ଓ ଦି'ଖଣ୍ଡ ଜାମାପଟା ପାଇଁ ? ଏବଂ (ଏଇ ହେଉଛି ସବୁଠାରୁ ମାରାତ୍ମକ ସନ୍ଦେହ) ସେ ବୋଧହୁଏ ଅପେକ୍ଷା କରି ରହିଛି ସେଇ ରଣଚଣ୍ଡୀକୁ ବାହାହେବ ବୋଲି । ହେ ଭଗବାନ୍ !

ଯାହାହେଉ ବଳରାମ ମଧ୍ୟ ବୁଝିଲେଣି ଯେ କଥାଟା ଏମିତି ଚାଲିଥିବ କାଳକାଳକୁ, ତା' ହୋଇ ନ ପାରେ । ଶୁଭାକାଙ୍କ୍ଷୀ ବାପାବୋଉଙ୍କୁ ତଥା ନିଜର ଭବିଷ୍ୟତକୁ ଆଉ ବେଶିଦିନ ବସେଇ ରଖି ହେବ ନାହିଁ । ହଁ, ମୁଁ ସୁଲେଖାକୁ ବାହା ହେବି । ଆଉ କାହାକୁ ବାହା ହେବାର ପ୍ରଶ୍ନ ଉଠୁ ନାହିଁ । ବାପାବୋଉ ରାଜି ନ ହେଲେ ନାହିଁ, ମୁଁ ସେଇ ଶେଷ ବିଦ୍ରୋହ ପାଇଁ ପ୍ରସ୍ତୁତ ଅଛି ଏବଂ ମୁଁ ଦେଶକାମ କରିବି ତା' ସାଙ୍ଗରେ ମିଶି । କିନ୍ତୁ କୋଉଠି ଅଛି ଏଇକ୍ଷଣି ମୋର ବାଗ୍‌ଦତ୍ତା, ମୋର ଅନନ୍ୟା ପ୍ରେମିକା ? କୋଉ ଚାଷୁଣୀମିତଣୀ ସାଙ୍ଗରେ ବସି ପଖାଳ ଖାଉଛି ? ନା କୋଉ ଧାଙ୍ଗଡ଼ାଧାଙ୍ଗଡ଼ୀମାନଙ୍କ ସାଙ୍ଗରେ ମିଶି ସଲପ ମଦ ପିଉଛି ଢକ୍ ଢକ୍ କିନି ? ଏବଂ ପୁଣି ଗୋଟିଏ ରାତିଅଧିଆ ଯୁଦ୍ଧ ପାଇଁ ଅଣ୍ଟା ଭିଡୁଛି ? ମୁଁ କେମିତି ଯାଇଁ ପହଞ୍ଚିବି ତା' ପାଖରେ ?

ଶେଷକୁ ସେ ଠିକ୍ କଲେ ଯେ ବାହାଘର ପଛକଥା, କିଛି ଗୋଟାଏ ଧନ୍ଦାରେ ନ ପଶିଲେ ହେବ ନାହିଁ ଆଉ । ଏଭଳି ଗୋଟିଏ ଧନ୍ଦା ଯାହାକୁ ସହଜେ ଛାଡ଼ିଦେଇ ହେବ ଦେଶକାମ କରିବାପାଇଁ, ଅବା ତାହା ଦେଶକାମର ପ୍ରତିକୂଳ ହେବ ନାହିଁ । ଏହି ଉଦ୍ଦେଶ୍ୟ ନେଇ ବଳରାମ ମଫସଲର ଗୋଟିଏ ପ୍ରାଇଭେଟ୍ କଲେଜ୍‌ରେ ପଶିଗଲେ ଇତିହାସର ଅଧ୍ୟାପକ ହୋଇ ଏବଂ ଅପେକ୍ଷା କଲେ ସୁଲେଖାଙ୍କ ଫେରିଆସିବା ପାଇଁ । ପ୍ରଥମେ ଦି'ପଦ କଥା କହିବାକୁ ହେବ ତା' ସାଙ୍ଗରେ ନିରୋଳାରେ ବସି । ନା, ଆଉ ଡେରି କଲେ ଚଳିବ ନାହିଁ । ସେ ଯେଉଁଠି ଥାଉ ପଛେ, ତା'ର ବର୍ଚ୍ଛା କି ଦାଆକଟୁରିଧାରୀ ସିପାହି ଭାଇଭଉଣୀଙ୍କ ଗହଣରେ, ମୁଁ ଯିବି ତା' ପାଖକୁ । ଆଉ ତାକୁ କହିବି କେଇଟା ସାଫ୍ ସାଫ୍ କଥା । ଏହି ଭାବରେ ବଳରାମ ନିଜକୁ ଉସ୍‌କେଇଲେ, ପ୍ରାୟ ପ୍ରତ୍ୟେକ

ଦିନ, ପିଲାଙ୍କୁ ଇତିହାସ ପଢ଼େଇବାର ଫାଙ୍କରେ । ସେତେବେଳକୁ ତାଙ୍କୁ ସତେଇଶ ବର୍ଷ ହେଲାଣି ।

କିନ୍ତୁ ତାଙ୍କ ପ୍ରସ୍ତୁତି ଅଧାରୁ ରହିଗଲା । ଯେତେବେଳେ ସେ ଶୁଣିଲେ ଯେ ଭାଇଭଉଣୀ ଦିହେଁ ଗିରଫ ହୋଇଛନ୍ତି ତାଙ୍କର କୋଉ ଯୁଦ୍ଧରେ ଘଟିଥିବା ହତ୍ୟାକାଣ୍ଡକୁ ନେଇ ଏବଂ କିଛି ଦିନ ପରେ ଦଣ୍ଡବିଧାନର ସମ୍ବାଦ । ନବୀନ ସାହୁ ଓ ତାଙ୍କ ଭଉଣୀ ସୁଲେଖା ସାହୁ ଏବଂ ତାଙ୍କର ଅନ୍ୟ କେତେଜଣ ସହଯୋଗୀ ଦୋଷୀ ବୋଲି ସାବ୍ୟସ୍ତ ହୋଇଛନ୍ତି, ଜମିଦାର ରଘୁନାଥ ସାମନ୍ତଙ୍କ ଦୁଇଜଣ ରକ୍ଷୀଙ୍କୁ ହତ୍ୟା କରିଥିବା ଅଭିଯୋଗରେ । ପ୍ରତ୍ୟକ୍ଷ ହତ୍ୟାକାରୀ ନବୀନ ଏବଂ ଆଉଜଣଙ୍କୁ ଆଜୀବନ କାରାଦଣ୍ଡ । ଅନ୍ୟମାନଙ୍କୁ ମଧ୍ୟ ଜେଲ୍ ଭୋଗିବାକୁ ପଡ଼ିବ ପାଞ୍ଚରୁ ଦଶବର୍ଷ ଯାଏଁ । ସେ ହିସାବରେ ସୁଲେଖାଙ୍କ ଭାଗ୍ୟ ଭଲ । ତାଙ୍କୁ ନ୍ୟୂନତମ ପାଞ୍ଚବର୍ଷର ସଜା ମିଳିଥିଲା ।

ହଉ, ପାଞ୍ଚବର୍ଷ ଏମିତି କେତେ କି ? ତା' ପରେ ସେ ଫେରିଆସିବ ତ ! ବଳରାମ ସୁଲେଖାଙ୍କ ସାଙ୍ଗରେ ଦେଖାକଲେ ସେ ଜେଲ୍‌ରୁ ମୁକୁଳି ଆସିବା ପରେ ପରେ ଏବଂ ତାଙ୍କୁ ନିରୋଳାରେ ଜଣାଇଲେ କାଳବିଳମ୍ୱ ନ କରି,

''ସୁଲୁ, ମୁଁ ତମକୁ ଘରକୁ ନେଇଯିବାପାଇଁ ଆସିଛି ।''

''ଥ୍ୟାଙ୍କ୍‌ସ । କ'ଣ ପାଛୋଟି ନେବାପାଇଁ ଆମ କର୍ମୀମାନଙ୍କ ସାଙ୍ଗରେ ମିଶି ? କିନ୍ତୁ ସେଥିର ଦରକାର କ'ଣ ଥିଲା ?'' ଯେଉଁ ହସର ପରାକାଷ୍ଠା ଦେଖାଇଲେ ସେ, ତାକୁ ଶୁଖିଲା ବୋଲି କୁହାଯିବ ।

''ଦରକାର ଥିଲା । କାହିଁକିନା ମୁଁ ତମକୁ ମୋ ଘରକୁ ନେଇଯିବାପାଇଁ ଆସିଛି ।'' କିନ୍ତୁ ବଳରାମଙ୍କ ସାହସ ହେଲା ନାହିଁ, ସୁଲେଖାଙ୍କ ହାବଭାବ ଦେଖି, ତାଙ୍କୁ 'ଟେକିନେଇ ପଳେଇବା' କଥାଟାକୁ ମନେ ପକେଇ ଦେବାପାଇଁ ।

''ହ୍ୱାଟ୍ ଡୁ ୟୁ ମିନ୍ ?''

''ମୋତେ କ'ଣ ବୁଝେଇବାକୁ ପଡ଼ିବ ସୁଲୁ ମୁଁ କ'ଣ କହିବାକୁ ଚାହୁଁଛି ? ଆମେ ଆଉ କେତେଦିନ ଅଲଗା ହୋଇ ରହିଥିବା ?'' ବଳରାମ ଆଖି ମିଳାଇଲେ ଆୟତାକ୍ଷିର ଆଖି ସାଙ୍ଗରେ ।

ସୁଲେଖା ତାଙ୍କର ଦୃଷ୍ଟି ତଳକୁ କଲେ ନାହିଁ । ହେଲେ କହିଲେ ଥକିଗଲା ପରି -

''ନା ବଳିଭାଇ । ତମେ ଜାଣିଛ ଯେ ତା' ଆଉ ସମ୍ଭବ ନୁହେଁ । ଅନେକ ପାଣି ବହିଗଲାଣି ଯା' ଭିତରେ ଆମ ରାଜ୍ୟର ସବୁ ନଈମାନଙ୍କରେ । ସୁବର୍ଣ୍ଣରେଖାରୁ ଆରମ୍ଭ କରି ବଂଶଧାରା ଯାଏଁ ଏବଂ ଆମକୁ ପୂରାପୂରି ଅଲଗା କରି ଦେଇ ସାରିଲାଣି

ପରସ୍ପରଠାରୁ । ମୁଁ ହେଉଛି ଜଣେ ନରହନ୍ତାର ଭଉଣୀ, ଆଉ ତମେ ହେଉଛ ଜଣେ ସମ୍ମାନନୀୟ ଇତିହାସ ଅଧ୍ୟାପକ -''

''ପ୍ଲିଜ୍ ସୁଲେଖା, କୁହ ନାହିଁ ସେମିତିକା କଥା । ତମେ ଜାଣିଛ ମୁଁ ତୁମକୁ କେଉଁ ଦୃଷ୍ଟିରେ ଦେଖିଆସିଛି ସବୁଦିନେ ଏବଂ ଆଜି ମଧ୍ୟ ଦେଖୁଛି । ଆମେ ଗୋଟିଏ ମୁଦ୍ରାର ଦୁଇଟି ପାଖ ଆମ ଦେଶପ୍ରେମକୁ ନେଇ ଏବଂ ତାକୁଇ ନିଭେଇବା ହେଉଛି ଆମ ଦି'ଜଣଙ୍କ କାମ । ସେଇ ଗୋଟିଏ ବୋଲି କାମ ।''

''ହଁ ବଳିଭାଇ, ତମ ଦେଶପ୍ରେମ ବିଷୟରେ ମୋର ତିଳେହେଲେ ସନ୍ଦେହ ନାହିଁ । କିନ୍ତୁ ଆମ ବାଟ ପୂରାପୂରି ଅଲଗା । କେବଳ ଅଲଗା ନୁହେଁ, ବିପରୀତମୁଖୀ । ତମେ ହେଉଛ ସ୍ୱଭାବସୁନ୍ଦର ଗାନ୍ଧିବାଦୀଟିଏ, ଆଉ ମୁଁ ହେଉଛି ଗୋଟାଏ ଘୃଣ୍ୟ ଉଗ୍ରବାଦୀ । କୋଉ ବୁଦ୍ଧିରେ ଆମେ ଏକାଠି ରହିବୁ, ସ୍ୱାମୀସ୍ତ୍ରୀ ହୋଇ ? କଥାଟା ନିହାତି ଆବ୍‌ସର୍ଡ୍ ନୁହେଁ କି ?''

''ନୁହେଁ । ଏକ ଆନର ପରିପୂରକ -''

ଏଇଠି ସୁଲେଖା ହୋ' ହୋ' ହୋଇ ହସିଉଠିଲେ । କିନ୍ତୁ ଆଗଭଳି ନୁହେଁ । ସେଥିରେ ଥିବା ବିଦ୍ରୁପ ଜଳ ଜଳ ହୋଇ ଦିଶି ଯାଉଥିଲା ।

''ବଢ଼ିଆ କଥାଟାଏ କହିଲ ବଳିଭାଇ ! ତା' ଯଦି ହୋଇଥାଆନ୍ତା, ତା'ହେଲେ ଆମ ଦେଶର ମଳିମୁଣ୍ଡିଆ ଓ ଧୋବଧାଉଳିଆ, ଗରିବ ଆଉ ବଡ଼ଲୋକମାନେ ମହାଆନନ୍ଦରେ ରହି ନ ଥାଆନ୍ତେ, ଏକ ଆନର ପରିପୂରକ ହୋଇ ? ନୋ ଡିଅର୍ ଫର୍‌ଗେଟ୍ ଇଟ୍ !''

ବଳରାମଙ୍କ ପାଖରେ ଅନେକ ତଥ୍ୟ ଥିଲା ତର୍କଟାକୁ ବଢ଼େଇବାପାଇଁ । କିନ୍ତୁ ତାଙ୍କର ମନେହେଲା ଯେ ସେଥିରେ ଲାଭ ନାହିଁ କିଛି । ସୁଲେଖା ଫେରିଯିବାକୁ ଚାହେଁ, ତା'ର ପ୍ରତିଶ୍ରୁତିକୁ ଭାଙ୍ଗିଦେଇ । ଓ-କେ ! ଓ-କେ !!

ଏଇ ଶେଷକଥା ଜାତୀୟ ନୀରବତାର କେତୋଟି ମୁହୂର୍ତ୍ତ ପରେ ସୁଲେଖା ହାତ ବଢ଼େଇଲେ ବଳରାମଙ୍କ ଆଡ଼କୁ - ''କିନ୍ତୁ ଆମେ ତଥାପି ବନ୍ଧୁ ହୋଇ ରହିବା ବଳିଭାଇ । ପିଲାଦିନର, ଅନେକ ଦିନର, ବନ୍ଧୁ - କ'ଣ କହୁଛ ?'' ବଳରାମ ସେଇ କରମର୍ଦ୍ଦନକୁ ସ୍ୱୀକାର କଲେ କିନ୍ତୁ କେବଳ ମୁଣ୍ଡ ଟୁଙ୍ଗାରିଲେ । ପଦୁଟିଏ କଥା ତାଙ୍କ ପାଟିରୁ ବାହାରିଲା ନାହିଁ । ଯଦିଓ ଅନୁଚ୍ଚାରିତ 'ଓ-କେ !' ଆହୁରି ପ୍ରଚଣ୍ଡ ଶବ୍ଦ କରି ଚାଲିଥାଏ ତାଙ୍କ ମନ ଭିତରେ ।

କ୍ରୋଧ ଏବଂ ଅଭିମାନ । ଯାହାର ବିସ୍ତାରିତ ଭାଷା ଥିଲା ଏହି ପ୍ରକାର, ସୁଲେଖାଙ୍କଠାରୁ ବିଦାୟ ନେଇ ଆସିଲା ପରେ -

ବେଶ୍, ମୁଁ ହେଉଛି ଗାନ୍ଧିବାଦୀ । ଦେଖିବୁ ମୁଁ ଆହୁରି କେତେ ଆଗକୁ ଯିବି ସେଦିଗରେ । ଆଉ ଦେଖିବି ତମେ ସବୁ ଦେଶକୁ କେଉଁ ଆଡ଼କୁ ନେଇଯାଉଛ ତମର ଉଗ୍ରବାଦ ନେଇ । ଉଗ୍ରବାଦ ନୁହେଁ, ସତ୍ୟାନାଶିଆ ପଣ । ଆଇ ମିନ୍ ଇଟ୍ !

ଏହି ପ୍ରକାର କ୍ରୋଧ-ଅଭିମାନର ବଶବର୍ତ୍ତୀ ହୋଇ ବଳରାମବାବୁ ଜଣେ ପ୍ରକୃତ ଏବଂ ସମ୍ପୂର୍ଣ୍ଣ ଗାନ୍ଧିବାଦୀ ହେବାକୁ ସ୍ଥିର କଲେ । ଆଗେ ଅଧିକାଂଶ ସମୟ ଖଦଡ଼ ଧୋତିକୁର୍ତ୍ତା ପିନ୍ଧୁଥିଲେ କଲେଜ୍‌ରୁ ଫେରିଆସିଲା ପରେ, ତାଙ୍କ ଘରୋଇ ବେଶ ହିସାବରେ । କିନ୍ତୁ ଏଣିକି ସେଇ ବେଶରେ ଇତିହାସ ପଢ଼େଇଲେ ଏବଂ ଗାନ୍ଧୀ ଓ ତାଙ୍କ ଅହିଂସାର ଅବତାରଣା କଲେ ପିଲାଙ୍କ ଆଗରେ, ଇତିହାସର ବିଭିନ୍ନ ବିପ୍ଳବ ବିଷୟରେ କିଛି କହିବାକୁ ଯାଇ । ଆମ ଗାନ୍ଧିବାଦ କେତେ ଅଧିକ ମହାନ୍ ତଥା କାର୍ଯ୍ୟକାରୀ ବୋଲି କହିଲା ପରି । ପିଲାଏ ଦେଖନ୍ତୁ, ଦୁନିଆ ଦେଖୁ ମୋର ପରିବର୍ତ୍ତନ । ନା, ପରିବର୍ତ୍ତନ ନୁହେଁ, ମୋ ବ୍ୟକ୍ତିତ୍ୱର ବିକାଶ, ଆପଣା ବୁଦ୍ଧିବିବେକ ଓ ସ୍ୱଭାବଚରିତ୍ରକୁ ନେଇ । ସୁଲେଖା ମଧ ଦେଖୁ, ଆଉ ବୁଝୁ ।

ସୁଲେଖା ବୋଧହୁଏ ପଢ଼ି ନ ଥିବ ମୁଁ ଯେଉଁ ଛୋଟିଆ ପ୍ରବନ୍ଧଟିଏ ଲେଖିଥିଲି ଗାନ୍ଧିବାଦୀଙ୍କ ବିଷୟରେ ଗାନ୍ଧୀଜୟନ୍ତୀ ଉପଲକ୍ଷ୍ୟରେ । ଯାହା 'ସମାଜ'ର ବିଶେଷ ସଂଖ୍ୟାରେ ବାହାରିଥିଲା । କିନ୍ତୁ ଏଣିକି ମୁଁ ରୀତିମତ ଅଧ୍ୟୟନ କରିବି, ଗବେଷଣା କରିବି, ସେଇ ଅନନ୍ୟ ଇତିହାସ ପୁରୁଷଙ୍କ ବିଷୟରେ ଏବଂ ବହି ଲେଖିବି ଏବଂ ବକ୍ତୃତା ଦେବି ମଞ୍ଚ ଉପରୁ, ସୁବିଧାଟିଏ ପାଇଲେ । ସୁଲେଖା ସମେତ ସମସ୍ତେ ଜାଣିବେ ମୁଁ ଜଣେ ପ୍ରକୃଷ୍ଟ ଗାନ୍ଧିବାଦୀ । ସେଇ ହେବ ମୋର ମୁଖ୍ୟ କାମ ଏଣିକି, ଇତିହାସ ପଢ଼େଇବା ଛଡ଼ା । ମୋର ଇପ୍‌ସିତ ଦେଶକାମ । ଧନ୍ୟବାଦ ।

ବଳରାମବାବୁ ଆଗେଇଗଲେ । ଦିନୁଟାଏ ବି ଡେରି କଲେ ନାହିଁ ତାଙ୍କ ନୂଆ ଗାନ୍ଧିବାଦୀ ଜୀବନକୁ ଗଢ଼ି ତୋଳିବା ପାଇଁ ।

କିନ୍ତୁ ଇଏ ପରା ଥିଲା ଜଣେ କ୍ରୋଧଜର୍ଜରିତ ପ୍ରତ୍ୟାଖ୍ୟାତ ପ୍ରେମିକର କାର୍ଯ୍ୟସୂଚୀ ? ସେଇ କାର୍ଯ୍ୟକଳାପକୁ ନେଇ ସେ ଅଧିକରୁ ଅଧିକ ଗୋଟିଏ ଖୁସିବାସିଆ ଗାନ୍ଧିବାଦୀ ହେଲେ କେମିତି ?

କଥାଟା ଏତେ ବିଚିତ୍ର ନୁହେଁ, ଯେମିତି ମନେହେଉଛି । ସେଥିରେ କ'ଣ ନ ଥିଲା ସୁଲେଖାଙ୍କୁ ଚ୍ୟାଲେଞ୍ଜ୍ କରିବା ଭାବ, ଯେ ଓ-କେ, ଆମର ବାଟ ସମ୍ପୂର୍ଣ୍ଣ ବିପରୀତ ପରସ୍ପରଠାରୁ, ଯାହା ତୁ କହିଲୁ, ତୋର-ସେମାନଙ୍କର ହିଂସା ଓ ମୋର ଗାନ୍ଧିବାଦୀ ଅହିଂସା ? ଆଉ ଅହିଂସା କ'ଣ ସହଜେ ଉଦାରସୁନ୍ଦର ହସହସ ନୁହେଁ ? କିନ୍ତୁ ତା'ଛଡ଼ା ସେ ବୋଧହୁଏ ସୁଲେଖାଙ୍କୁ ଜଣାଇବାକୁ ଚାହୁଁଥିଲେ ଯେ ତୁ ଯୋଉ ଚେହେରା ଦେଖେଇଲୁ

ମୋତେ ସେଦିନ, ସେଇଟା ମିଛ, ପୂରାପୂରି ମିଛ । ଯେତେ ଉଗ୍ରବାଦୀ ହେଲେ ମଧ ତୁ ଗୁରୁଗମ୍ଭୀର ହୋଇ ନ ପାରୁ । ମୁଁ ତୋର ସେଇ ମିଛ ରୂପ ଚିହ୍ନାଇଦେବି ତୋତେ । ଯେତେବେଳେ ତୁ ବୁଝିବୁ ଯେ ମୁଁ ସେଥିରେ ଠକି ହୋଇଯାଇ ନାହିଁ । ମୁଁ ତୋ ଉପରେ ମୋଟେ ରାଗି ନାହିଁ କି ରାଗିପାରିବି ନାହିଁ । କାରଣ ମୁଁ ଜାଣେ ତୁ ସେମିତି ନୁହଁ, ମୋଟେ ନୁହଁ । ମୁଁ ଦେଖିଛି, ଜାଣିଛି, ଅନୁଭବ କରିଛି ତୋର ସତ ପ୍ରାଣବନ୍ତ ଚେହେରା । ଆଉ ସେଇଲାଗି ମୋର ଏଇ ଆହୁରି ହସହସ ଭାବ । ଦେଖିଲେ ଜାଣିବୁ, ବୁଝିବୁ...

ତା'ହେଲେ କିନ୍ତୁ ସେ ଏମିତି ଦୂରେଇ ରହିଲେ କାହିଁକି ସୁଲେଖାଙ୍କଠାରୁ, ସେଇଦିନଠୁଁ ? କାରଣ ଯେତେ ସରସ ଏବଂ ଉଦାର, ତେଣୁ ପ୍ରକୃଷ୍ଟ ଗାନ୍ଧିବାଦୀ ବୋଲି ନିଜକୁ ମଣିଲେ ମଧ ସେ ଭୁଲିଯାଇ ପାରିଲେ ନାହିଁ ଯେ ସେ ଜଣେ ପ୍ରତ୍ୟାଖ୍ୟାତ ପ୍ରେମିକ । ତେଣୁ ଆହତ ଅଭିମାନ । ତେଣୁ ସୁଲେଖା ଦେଖିବ ଓ ବୁଝିବ ର ଅର୍ଥ ନ ଥିଲା ଯେ ସେ ନିଜକୁ ଥୋଇବେ ତା' ଆଗରେ । ନା, ମୁଁ ମୋ ବାଟରେ ଯିବି, ମୋ ନିଜ କାମ କରିବି, ମଧ ମୋ ନିଜ ଘରକରଣା । ହେଲେ ସେଇ ମୋତେ ଦେଖିବ ଆଉ ବୁଝିବ । ଆପେ ଆପେ, କାଳକ୍ରମେ ।

ନିଜ ଘରକରଣାକୁ ନେଇ ସେ ସ୍ଥିର କଲେ ଯେ ଏଣିକି ବାହା ନ ହୋଇ ରହିବାରେ କୌଣସି ଅର୍ଥ ନାହିଁ । ତେଣୁ ସେ ଯଥାଶୀଘ୍ର ଘୋଷଣା କଲେ ତାଙ୍କ ବୋଉଙ୍କ ଆଗରେ,

''ବୋଉ, ମୁଁ ବାହା ହେବାକୁ ପ୍ରସ୍ତୁତ ବର୍ତ୍ତମାନ । ତୁ ଆଉ ବାପା ଯେଉଁଠି ସ୍ଥିର କରିବ, ମୁଁ ସେଇଠି ବାହା ହେବି । ଅବଶ୍ୟ ବୁଢ଼ାବର ପାଇଁ କନ୍ୟାଟିଏ ନ ମିଳିଲେ ଭିନ୍ନ କଥା, ସେଥିପାଇଁ କମ୍ପାନୀ ଦାୟୀ ନୁହେଁ ।'' କହି ହସିଉଠିଲେ ଲଘୁ ପରିହାସ ଛଳରେ ।

କିନ୍ତୁ ଭୂମ୍ୟଧିକାରୀ ବିରଞ୍ଚି ନାଏକଙ୍କ ପାଠୁଆ ଏବଂ ଗୋଟିଏ ବୋଲି ପୁଅ ପାଇଁ କନ୍ୟା ନ ମିଳିବାର ପ୍ରଶ୍ନ ଉଠୁ ନାହିଁ, ତାକୁ ଯେତେ ବର୍ଷ ହେଉ ପଛେ । ତା'ଛଡ଼ା ତେତିଶ ବର୍ଷ ବୟସର ବଳରାମବାବୁ ସତେ ବୁଢ଼ା ନା କ'ଣ ମ ? ପ୍ରଶ୍ନ ଉଠିଲା କେବଳ ବଛାବଛି ନେଇ । ବଳରାମବାବୁ ସେଥିରେ ମୁଣ୍ଡ ପୂରାଇବାକୁ ନାରାଜ । ଘୋଷା ପଦ ପରି କହି ଚାଲିଛନ୍ତି, ''ନା, ମୁଁ ଗୋଟିଏ ହେଲେ ଫଟୋ ଦେଖିବାକୁ ଚାହେଁ ନାହିଁ କି ଗୋଟିଏ ହେଲେ ଇସ୍ତାହାର କୋଉ ଝିଅର ରୂପଗୁଣ ବିଷୟରେ । ତମ ଦି'ଜଣଙ୍କ ଠାରୁ ଆଉ କିଏ ବେଶି ଭଲ ଚାହେଁ ମୋର ? ନା ଜାଣିଛି କୋଉ ଝିଅ ସବୁଠାରୁ ବେଶି ଭଲ ହେବ ମୋ ପାଇଁ ?''

ସେଇଠୁଁ ବାପା ବୋଉଙ୍କ ଭିତରେ ଅନେକ ଯୁକ୍ତିତର୍କ ଓ ଆଳାପ ଆଲୋଚନା ପରେ ଯେଉଁ ଝିଅଟି ବଛା ହେଲା ବଳରାମବାବୁଙ୍କ ପାଇଁ, ତା' ନାଆଁ ଥିଲା ସରୋଜିନୀ । ଗୋରୀ, ତନୁପାତଳୀ, ଆନତଚାହାଣି ସୁନ୍ଦରୀଟିଏ । 'ସତେ କଣ୍ଢେଇଟିଏ !' ବୋଉ

କହିଲେ । ବାପା ମୁଣ୍ଡ ଟୁଙ୍ଗାରିଲେ ଏବଂ କହିଲେ ମନେ ମନେ - ହୁଁ, ଠିକ୍ ଓଲଟା, ପୂରାପୂରି ଓଲଟା ସେଇ ଉଦ୍ଦଣ୍ଡୀ ଅଲାଜୁକୀ ଠାରୁ । ଇଏ ମଧ ବି.ଏ ପାସ୍ କରିଛି । ମଧ ଖାନ୍ଦାନି ଘର ପିଲା । ବାପା ପୋଷ୍ଟମାଷ୍ଟର ଥିଲେ । ଆଉ କ'ଣ ଦରକାର ?

ବାହାଘର ସରିଲା । ବୋହୂ ଘରକୁ ଆସିଲା ଏବଂ ବାସରଘର ରାତିରେ ବଳରାମବାବୁ ତାକୁ ହାର୍ଦ୍ଦିକ ସ୍ୱାଗତ ଜଣାଇଲେ ତା' ଓଠରେ ଚୁମାଟିଏ ଦେଇ । ଲଜ୍ଜାଶୀଳା ଆନତବଦନାର ମୁଣ୍ଡରୁ ଓଢ଼ଣା ଖସେଇ ଦେଇ, ଧୀରେ ସୁସ୍ଥେ, ଗୋଟାଏ ଉଚିତ କାମ କଲା ପରି ଏବଂ ଜିନି ତା'ର ନୀରବ ଅଙ୍ଗୀକାର ଜଣାଇଲା ମୃଦୁମଧୁର ସ୍ମିତହାସଟିଏ ବାଢ଼ି ଦେଇ ।

କିନ୍ତୁ ସେତିକିବେଳେ ଆଉ ଜଣେ ଆସି ଦେଖା ଦେଲା ତାଙ୍କ ମାନସପଟରେ, ତାଙ୍କୁ ଆକ୍ରମଣ କଲାପରି, ହସିଉଠିଲା ଖିଲି ଖିଲି ହୋଇ ଏବଂ କହିଲା, -

''ସତେ ?''

ସେଇଠୁଁ କହୁଛି, ବଳରାମବାବୁଙ୍କୁ ଅପ୍ରସ୍ତୁତ ହୋଇ ଉଠିବା ଦେଖି, ''ମଲା, ଏମିତି ତରକି ଉଠୁଛ କାହିଁକି ? ତମେ ପରା ଚାହୁଁଥିଲ ମୁଁ ତମକୁ ମୋର ସତରୂପ ଦେଖେଇବି ବୋଲି -?''

''ହଁ ଚାହୁଁଥିଲି । ଚାହେଁ । କିନ୍ତୁ ତା' ବୋଲି ମୁଁ କ'ଣ ତୋତେ ତଥାପି ଭଲପାଏ ବୋଲି ଭାବୁଛୁ ? ଭୁଲ୍ ଧାରଣା । ତୁ ବିଗତ ଅତୀତ ଏବଂ ମୁଁ ମୋର ନୂଆ ସଂସାର ଗଢ଼ିବାକୁ ଚାହେଁ, ମୋ ନିଜ ଭାବରେ । ଅବଶ୍ୟ ମୁଁ ଚାହେଁ ତୋର ମଙ୍ଗଳ ହେଉ, ତୋ ମୁହଁଟା ବି ହସହସ ଦିଶୁ ଆଗ ପରି, ତୋର ଶୁଭାକାଙ୍କ୍ଷୀ ହିସାବରେ ।'' ଏହି ଭାବରେ ବଳରାମବାବୁ ସେହି ଆକ୍ରମଣର ପ୍ରତିରୋଧ କଲେ ଏବଂ ଭାବିଲେ ସେ ଜିତି ଯାଇଛନ୍ତି । ଅବଶ୍ୟ ଜିତି ଯାଇଛନ୍ତି ।

ବଳରାମବାବୁ ମନଃପ୍ରାଣ ଦେଇ ସରୋଜିନୀକୁ ଭଲପାଇଲେ ଏବଂ ଯଥାକ୍ରମେ ତାଙ୍କର ମନେହେଲା ଯେ ଅଲାଜୁକୀ ଆରଟା ଆଉ ତାଙ୍କ ପାଖ ମାଡ଼ିବାକୁ ସାହସ କରୁ ନାହିଁ ଆଜିକାଲି ।

କିନ୍ତୁ ସମୟ ଲାଗିଲା । ଯେମିତି ସମୟ ଲାଗିଲା ନିଜର ନୂଆ ସ୍ୱରୂପକୁ ଅଚିହ୍ନା ନ ବାରି 'ଏଇ ହେଉଛି ମୁଁ, ପ୍ରକୃତରେ ମୁଁ' ବୋଲି ଆଦରି ନେବା ପାଇଁ ।

ହେଲେ ତା' ପୂର୍ବରୁ କମ୍ ହଇରାଣ କରି ନାହିଁ ସେଇ ବିଗତ ଅତୀତ ହାସ୍ୟମୟୀର ଛଇ ! ବିଶେଷତଃ ଲାଜ ଲାଗେ, କହିବାକୁ ଘୃଣା ଆସେ ନିଜ ଉପରେ, ଗୋଟାଏ ଅନୁଭବକୁ ମନେ ପକାଇ । ଯେଉଁ ଅନୁଭବ ଆସିଥିଲା ଥରେ (ଥରେ ନା ଦି'ଥର ? ନା ତିନିଥର ?) ପରିଣୀତା ସାଙ୍ଗରେ ଦେହପ୍ରାଣ ଦେଇ ପୂରାପୂରି ମିଳିତ ହେବାର କ୍ଲାଇମାକ୍ସ

ବେଳେ । ମନେହେଲା ସିଏ ତାଙ୍କ ନାକକୁ ଚିମୁଟି ଦେଉଛି - ଇଏ ନୁହେଁ ସିଏ - ଯେମିତିକି ଆହୁରି ଉତ୍ତେଜନା, ତହୁଁ ଉଲ୍ଲାସ ମିଳିବ ତାଙ୍କୁ କ୍ଲାଇମାକ୍ସର ସମ୍ପୂର୍ଣ୍ଣ ସଫଳତା ପାଇଁ । ଇସ୍ ! ମୋ ମନଟା ଏତେ ଦୁର୍ବଳ, ହେଲେ ଅମାନିଆ ଥିଲା ଦିନେ ଯେ ମୁଁ ତାକୁ ଆୟତ୍ତରେ ରଖିପାରୁ ନ ଥିଲି ?

ସମୟ ଲାଗିଲା । ଉଦାରସୁନ୍ଦର ଗାନ୍ଧିବାଦକୁ ଆବୁରି, ପରିଣୀତା ସମେତ ଦୁନିଆଟାକୁ ଭଲ ପାଇବାର ଭାବରେ ପଖାଳି ହୋଇ ନିଜକୁ ଭଲପାଇବାରେ ସମୟ ଲାଗିଲା । କେତେ ସମୟ ବୋଲି ପଚାରନ୍ତୁ ନାହିଁ । ପାଞ୍ଚରୁ ଦଶବର୍ଷ କି ତା'ଠୁଁ ବେଶି । ତା'ର ଗ୍ରାଫ୍ କାଟି ହେବ ନାହିଁ ସହଜେ ।

ତେବେ କହିହେବ ମୋଟାମୋଟି, ବଳରାମବାବୁଙ୍କୁ ପଚାଶ ବର୍ଷ ହେଲା ବେଳକୁ, (ସେତେବେଳକୁ ସେ ପ୍ରଫେସର୍ ପାହ୍ୟାକୁ ଉନ୍ନୀତ ହୋଇ ଆଉ ଗୋଟିଏ ବଡ଼ କଲେଜ୍‌ରେ ଯୋଗ ଦେଲେଣି) ଯେ ସେ ଯେଉଁ ସୁନାମ ଅର୍ଜନ କରିଛନ୍ତି ଜଣେ ଲୋକପ୍ରିୟ ଅଧ୍ୟାପକ ତଥା ଅତ୍ୟନ୍ତ ଭଲ ଲୋକଟିଏ ବୋଲି, ସେଥିରେ ଭେଜାଲ୍ ବୋଲି କିଛି ନାହିଁ । ଯାହା ତାଙ୍କ ପ୍ରଶାନ୍ତ ମୁଖମଣ୍ଡଳରୁ ଜଣା ପଡୁଛି । ଯାହା ସହାସ୍ୟରୁ ବଳି ପ୍ରସନ୍ନ ।

ଏବଂ ସେ ସରୋଜିନୀଙ୍କୁ ଷୋଳଅଣା ଭଲ ପାଆନ୍ତି, ଏଥିରେ ସନ୍ଦେହ ଆସିବାର କୌଣସି କାରଣ ନାହିଁ ।

ମଧ୍ୟ ସନ୍ଦେହ ନାହିଁ ଯେ ସେ ସ୍ନେହୀ ପିତାଟିଏ । ସରୋଜିନୀ ତାଙ୍କୁ ଗୋଟିଏ ପୁଅ ଓ ତା' ପଛକୁ ଯୋଡ଼ିଏ ଝିଅ ଆଣି ଦେଇଛନ୍ତି ଇତି ମଧ୍ୟରେ । ଅମର, ଅନିମା ଓ ତନିମା ।

ଏବଂ ସେଇ ବୟସରେ ଆସି ପହୁଞ୍ଚିଲା ବେଳକୁ ସେ ସହଜରେ, ସ୍ୱଚ୍ଛନ୍ଦରେ ଏବଂ ବନ୍ଧୁସୁଲଭ ସହାସ୍ୟ ବଦନରେ ନମସ୍କାର ଅବା ପ୍ରତିନମସ୍କାରଟିଏ ପକେଇ ପାରୁଛନ୍ତି ନେତ୍ରୀ ସୁଲେଖା ସାହୁଙ୍କ ଆଡ଼କୁ ଚାହିଁ, ତାଙ୍କ ସାଙ୍ଗରେ ହଠାତ୍ ଭେଟ ହୋଇଗଲେ । ମଧ୍ୟ ପଦେ ଦି'ପଦ କୁଶଳ ପ୍ରଶ୍ନ ପଚାରିବାରେ କିମ୍ବା ତା'ର ଉତ୍ତର ଦେବାରେ କୌଣସି ଅସୁବିଧା ହେଉ ନାହିଁ ଏବଂ ଅନେକ ଅନେକ ଦିନ ହେଲାଣି ତାଙ୍କ ଛାତିଟା ଅକାରଣରେ ଦମ୍‌ଦମ୍ ହୋଇ ଉଠୁ ନାହିଁ ତାଙ୍କୁ ଦେଖିଲାକ୍ଷଣି, ମୁହୂର୍ତ୍ତକ ପାଇଁ ହେଲେବି ।'

ଅଧିକରୁ ଅଧିକ ପ୍ରତିଷ୍ଠିତ ହୋଇ ଉଠିଥିବା ଆତ୍ମସନ୍ତୋଷ ତାଙ୍କୁ ମଧ୍ୟ ଏକ ବିସ୍ମୟକର ଅନୁମାନ ଆଣି ଦେଉଥିଲା ବେଳେ ବେଳେ - ସୁଲେଖା ଅବଶ୍ୟ ଭିନ୍ନ ପଥର ପଥିକ ଏବଂ ସେ ସ୍ୱଇଚ୍ଛାରେ ମୋ ଜୀବନରୁ ଦୂରେଇ ଯାଇଛି । ଫାଇନ୍ ! କାହାରି କିଛି କ୍ଷତି ହୋଇ ନାହିଁ ସେଥିଯୋଗୁଁ । କିନ୍ତୁ ଭାବିବାକୁ ପଡ଼େ ଯେ ମୁଁ ଯେଉଁଠି ମୋର ଗାନ୍ଧିବାଦକୁ ମୁଠେଇ ଧରିଛି, କେତେ କ'ଣ ଲେଖିଲିଣି ଗାନ୍ଧିଦର୍ଶନ ଉପରେ (ଯଦିଓ ବହିଟିଏ

ଛପେଇପାରି ନାହିଁ ଆଜିଯାଏଁ), କେତେ କ'ଣ କହିଲିଣି ସେ ବିଷୟରେ ବିଭିନ୍ନ ସଭାସମିତିରେ, ତାକୁ ପ୍ରଚାର କରିବାଲାଗି, ସେ ତା'ର ସତ୍ୟାନାଶୀ, ହେଲା ଏବେ ବିପ୍ଳବୀ ଚିନ୍ତାଧାରାରୁ ଅଛବହୁତ ଓହରି ଯାଇ ନାହିଁ କି ? ନବୀନଭାଇ ଚାଲିଗଲେଣି । ବିଶେଷ ଅସୁସ୍ଥତା ହେତୁ ତାଙ୍କୁ ଜେଲ୍‌ରୁ ଖଲାସ କରି ଦିଆ ହୋଇଥିଲା ପ୍ରାୟ ଦଶବର୍ଷ ପରେ । ବାହାରେ ଉପଯୁକ୍ତ ଚିକିତ୍ସା ପାଇବା ଲାଗି । କିନ୍ତୁ ସେ ସୁସ୍ଥ ହୋଇ ଉଠିଲେ ନାହିଁ । କୁଆଡ଼େ ଟି.ବି. ରୋଗ ଏମିତି ଜରି ଯାଇଥିଲା ତାଙ୍କ ଦେହରେ ସେତେବେଳକୁ ଯେ ସେଥିରୁ ଉଧୁରି ଆସିପାରିଲେ ନାହିଁ । କିନ୍ତୁ ଭାଇ ଚାଲିଗଲେ ବୋଲି ସୁଲେଖା କ'ଣ ଗୋଟାଏ ବିରାଟ ଚାପ, ଜନ୍ମଜୀବନର ଚାପରୁ ଧୀରେ ଧୀରେ ଖସିଆସିଲା ? କାହିଁକିନା ପାଞ୍ଚବର୍ଷର ସେଇ ଜେଲ୍‌ଦଣ୍ଡ ପରେ ସେ ଆଉ ଜେଲ୍‌ଦୁଆର ମାଡ଼ି ନାହିଁ ତ ? କାହିଁକି ବା ଯିବ ସେଠିକି ? ଆଇନ୍‌ଅମାନ୍ୟର କେଉଁ ଉଗ୍ରରୂପ ଦେଖେଇଛି କି ସେ ସେଇ ଦିନଠୁଁ ? ଅବଶ୍ୟ ତାଙ୍କ ଦଳ 'ମୁକ୍ତି ସେନା'କୁ ବେଆଇନ୍ ଘୋଷଣା କରାଯାଇଛି । କିନ୍ତୁ ତା' ସତ୍ତ୍ୱେ ସେ କ'ଣ ତା'ର ଦେଖିଲା କାମ କରନ୍ତା ନାହିଁ, ତା'ର ତଥାକଥିତ ଆଦର୍ଶ ଅନୁଯାୟୀ ? ନା, ସେଭଳି କିଛି କାମ କରି ନାହିଁ ସେ । ଖାଲି କାଁ ଭାଁ ବକ୍ତୃତା ଦିଏ ବେଳେ ବେଳେ, ଯାହାର ଦି' ଧାଡ଼ି ବାହାରେ ଖବରକାଗଜରେ ଯେ ନେତ୍ରୀ ସୁଲେଖା ସାହୁ କହିଲେ ଜନତାକୁ ଉଦ୍‌ବୋଧନ ଦେଇ, ଯଥାର୍ଥ ସ୍ୱାଧୀନତା ତଥାପି ମିଳି ନାହିଁ ଆମକୁ ଏବଂ ସେଥିପାଇଁ ଆହୁରି ଅନେକ ଲଢ଼େଇ କରିବାକୁ ପଡ଼ିବ । ସେଇ ପୁରୁଣା କଥା । କିନ୍ତୁ ମ୍ୟାଡ଼ାମ୍ କେମିତିକା ଲଢ଼େଇ ? କିଭଳି ଅସ୍ତ୍ରଶସ୍ତ୍ର ନେଇ ? କହୁନା ସେ କଥା ?

କିନ୍ତୁ ଏହି ପରିପ୍ରେକ୍ଷୀରେ ଗୋଟାଏ ସ୍ପଷ୍ଟ ଉତ୍ତର ମିଳିଲା ବଳରାମବାବୁଙ୍କୁ ଏବଂ ସେ ଆଶ୍ଚର୍ଯ୍ୟ ହୋଇ ଉଠିଲେ, ଯେତେବେଳେ ସେ ଶୁଣିଲେ ଯେ ମୁକ୍ତିସେନାର ବିଭାଜନ ହୋଇ ଯାଉଛି ଏବଂ ସୁଲେଖା ଗୋଟାଏ ନୂଆ ଦଳ ଗଢ଼ିଛି । ତା' ନାଆଁ 'ପ୍ରଜାଶକ୍ତି' ଏବଂ ସେମାନେ ଭୋଟ ଲଢ଼େଇ ଲଢ଼ିବେ ଆସନ୍ତା ନିର୍ବାଚନରେ । କିଓ, ଇଏ କ'ଣ ହେଲା ? ତମେସବୁ ପରା ଏଇ ପେଟୁଆ-ବୁର୍ଜୁଆ ନ୍ୟସ୍ତସ୍ୱାର୍ଥମାନଙ୍କ ଗଣତନ୍ତ୍ରରେ ବିଶ୍ୱାସ କର ନାହିଁ ? ଆଉ ସମ୍ମୁଖ ସମର ଅର୍ଥାତ୍ ହାତାହାତି ହିଂସାତ୍ମକ ଲଢ଼େଇ ହେଉଛି ତମର ଧର୍ମ ? ଏଭଳି ଏକ ପ୍ରଶ୍ନ ପଚରା ହୋଇଥିଲା ଜନନେତ୍ରୀ ସୁଲେଖାଙ୍କୁ ଏବଂ ସେ ତା'ର ଉତ୍ତରରେ କହିଲେ, - ''ବାବୁ କିଏ କହିଲା ଆମେ ଖାଲି ସେମିତିକା ଲଢ଼େଇ କରି ଜାଣୁ, ଏମିତିକା ଲଢ଼େଇ ଆସେ ନାହିଁ ଆମକୁ ? ଆମର ଉଦ୍ଦେଶ୍ୟ ବଦଳି ନାହିଁ । ରଣନୀତି ବଦଳି ନାହିଁ । କେବଳ ରଣକୌଶଳ, ଆପାତତଃ ।'' ଉତ୍ତରଟା ଛାଡ଼ିଦେଇ ନେତ୍ରୀ ମଧ୍ୟ ହସିଥିଲେ ଖିଲି ଖିଲି ହୋଇ । ଚତୁର ଚମତ୍କାର ତଥ୍ୟଟିଏ ଶୁଣେଇଲା ପରି ।

ଧନ୍ୟବାଦ, ସୁଲେଖା । ଦେଖି ଖୁସି ହେଲି ଯେ ତୁ ବଦଳି ଯାଇଛୁ । ବଳରାମବାବୁ ଏହିଭାବରେ ବଧେଇ ଦେଲେ ତାକୁ, ଯେତେବେଳେ ସେ ତା'ର ସେଇ ଖିଲି ଖିଲି ହସର ଶୋଭା ଦେଖିବାକୁ ପାଇଲେ ଟି.ଭିରେ; ଉପରୋକ୍ତ ବାର୍ତ୍ତାଳାପ ପ୍ରସାରିତ ହେଲାବେଳେ । କାହିଁ ଏଇକ୍ଷଣି ସେଇ ପରାଭବ ଓ କ୍ରୋଧର ଆତ୍ମଘାତୀ ଚେହେରା ଯାହା ତୁ ଦେଖେଇଥିଲୁ ମୋତେ ଏବଂ ଗୋଟାଏ ପାଠ ପଢ଼େଇଥିଲୁ ଆମର ବିପରୀତମୁଖି ବୁଦ୍ଧିବିଚାର୍ ଓ ଆଦର୍ଶ ବିଷୟରେ ? ଅନ୍ତତଃ ତୁ ଆଗଭଳି ହସିପାରୁଛୁ, ତମ ରଣନୀତି କି ରଣକୌଶଳ ଯାହା ହେଉ ପଛେ, ଏଇ କ'ଣ କମ୍ କଥା ?

ଏବଂ ସେ ଆକାଶରୁ ଖସିଲେ କିଛି ଦିନ ପରେ ଯେତେବେଳେ ସେ ପଢ଼ିଲେ ଖବରକାଗଜରେ ସେ ଯାହା କହୁଛି ଜଣେ ସମ୍ବାଦ ପ୍ରତିନିଧିକୁ -

''ଆମେ କେତେବେଳେ କ'ଣ କହୁଛୁ ଓ କରୁଛୁ ଏବଂ ଯା ସାଙ୍ଗରେ ତା'ର ମେଳ ଅଛି କି ନାହିଁ, ସେ ବିଷୟରେ ଅନେକ ପ୍ରଶ୍ନ ଉଠିପାରେ ଆପଣଙ୍କ ମନରେ, ମୁଁ ମନା କରୁ ନାହିଁ । କିନ୍ତୁ ଜାଣି ରଖନ୍ତୁ ଗୋଟାଏ କଥା; ଆମର ଆତ୍ମବିଶ୍ୱାସ ଅକ୍ଷୁଣ୍ଣ ରହିଛି । କାରଣ ଆମେ ଜାଣିଛୁ ଯେ ପ୍ରଜାମାନେ ଆମକୁ ଭଲ ପାଆନ୍ତି ଏବଂ ତାଙ୍କର ଅଟଳ ବିଶ୍ୱାସ ଯେ ଆମେ ତାଙ୍କୁ ଭଲ ପାଉ । ଏତେ ଭଲ ପାଉ ଯେ ଆମେ ଯେମିତି ହେଲେ ତାଙ୍କ ନ୍ୟାଯ୍ୟ ଅଧିକାର ଫେରାଇ ଆଣିବୁ ତାଙ୍କ ପାଇଁ, ରଜାଙ୍କ ହାତରୁ ଛଡ଼େଇ ନେଇ । କେତେବେଳେ ତାଙ୍କ ସାଙ୍ଗରେ ଲଢ଼େଇ କରି ଅବା କେତେବେଳେ ତର୍କ କରି, ଅଥବା ତାଙ୍କୁ ଫୁସୁଲେଇ.... ।'' ବଳରାମବାବୁ ମନଶ୍ଚକ୍ଷୁରେ ଦେଖିଲେ ସେ କିଭଳି ଚମତ୍କାରୀ ହସଟାଏ ହସିଥିବ ଏମିତି କହିଲା ପରେ ।

...ୱାଣ୍ଡରଫୁଲ୍ ! ଭଲ ପାଇବାର ଏଭଳି ଏକ ଉଚ୍ଚାରଣ କରିହୁଏ ତମ ଆଦର୍ଶକୁ ନେଇ, ତା' ଜଣା ନ ଥିଲା ମୋତେ । ହଁ, ସୁଲେଖା । ସୁବିଧା ପାଇଲେ ତୋତେ ବୁଝେଇ ଦେଇ ପାରିଥାଆନ୍ତି ଯେ ପ୍ରଜାମାନଙ୍କୁ ଭଲ ପାଇବା ସାଙ୍ଗରେ ରଜାଙ୍କୁ ମଧ୍ୟ ଭଲ ପାଇ ହେବ । ଏଇ ସସ୍ନେହ ସହାବସ୍ଥାନ କେବଳ ସମ୍ଭବ ନୁହେଁ, ଏହାହିଁ ଉଚିତ ସଂସାରର ମଙ୍ଗଳ ପାଇଁ, ''ସର୍ବେ ଭବନ୍ତୁ ସୁଖିନଃ'' ର କାମନାକୁ ଚରିତାର୍ଥ କରିବାପାଇଁ । ଏହାହିଁ ଗାନ୍ଧିବାଦର ସାରକଥା । ସେ ଭାରତକୁ ସ୍ୱାଧୀନ କରିବାକୁ ଚାହିଁଲେ କେବଳ ଭାରତବାସୀଙ୍କ ସୁଖପାଇଁ ନୁହେଁ, ମଧ୍ୟ ବ୍ରିଟିଶ୍ ରଜାଙ୍କ ସୁଖ ପାଇଁ । ଯେମିତିକି କନ୍ଦଳର ଅବକାଶ ରହିବ ନାହିଁ ଆଉ । ଅବା ଦୁଶ୍ଚିନ୍ତା, ମୁଣ୍ଡବଥା । ଦୁଇପକ୍ଷ ସୁଖରେ ରହିବେ । ସତରେ ସୁଲେଖା, ତୁ ବହୁତ ପାଖେଇ ଆସିଲୁଣି ଆମ ଗାନ୍ଧିବାଦ ଆଡ଼କୁ । ମୁଁ ଯେଉଁ ସର୍ବଜନ ସଂପ୍ରୀତିର ବାନା ଉଡ଼େଇ ଚାଲିଛି, ସଚ୍ଚା ଗାନ୍ଧିବାଦକୁ ପ୍ରଚାର କରିବା ଦିଗରେ, ତୋର ଏଇ ପ୍ରଜାଗତ ପ୍ରାଣର ଭଲପାଇବାପଣ ବିଶେଷ ଭିନ୍ନ ନୁହେଁ ତା' ଠାରୁ । ଖାଲି ଘେରଟାକୁ ଆଉ ଟିକିଏ ବଢ଼େଇ ଦେଲେ ହେଲା ।

ସୁଲେଖା, ମୋର କ'ଣ ବେଳେ ବେଳେ ମନେହୁଏ ଜାଣିଛୁ ? ଥ୍ୟାଂକ୍‌ସ ଟୁ ୟୁ, ମୋର ଗାନ୍ଧିବାଦ ଟାଣ ହୋଇଯାଇଛି ସେଇଦିନଠୁଁ । କିନ୍ତୁ ତୁ କାଳକ୍ରମେ ମୋରି ଦ୍ୱାରା ପ୍ରଭାବିତ ହୋଇ ନାହୁଁ ବୋଲି କିଏ କହିବ ? ମୁଁ ଯାହା ସବୁ ଲେଖିଛି କି କହିଛି ଗାନ୍ଧିବାଦ ଉପରେ ତାକୁ କ'ଣ ତୁ ଅଳ୍ପବହୁତ ପଢ଼ିବାକୁ ପାଇ ନ ଥିବୁ ବିଭିନ୍ନ ପତ୍ରପତ୍ରିକାରେ ? ଏବଂ ତୁ ତାକୁ ସିଧାସଳଖ ଗ୍ରହଣ ନ କଲେ ମଧ୍ୟ ସଂପ୍ରୀତିର ସେଇ ଆହ୍ୱାନ କ'ଣ ପହୁଞ୍ଚି ନ ଥିବ ତୋ ପାଖରେ ? ବୁଝିଲୁ ସୁଲେଖା, ଯୌନ ଆବେଗର ଭଲପାଇବା କେବେଠୁଁ ଉଭେଇଗଲାଣି ଆମ ଭିତରେ । ଭଲ ହୋଇଛି ବୋଧହୁଏ, କିନ୍ତୁ ତା' ଉର୍ଦ୍ଧ୍ୱରେ ଯେଉଁ ସଂପ୍ରୀତିର ଭାବ ରହିଛି ପରସ୍ପର ମଧ୍ୟରେ ତା'ର ମୂଲ୍ୟ ଅନେକ ଅଧିକ, ତୁଚ୍ଛା ବନ୍ଧୁତା ଠାରୁ ।

ଆତ୍ମସନ୍ତୋଷ ଏହିଭଳି ଏକ କୃତକୃତ୍ୟ ଭାବ ମଧ୍ୟ ଆଣିଦିଏ ବଳରାମବାବୁଙ୍କ ମନରେ, ସୁଲେଖା ବିଷୟରେ ଭାବିଲା ବେଳେ । ଏପରିକି ତାଙ୍କର ମନେହୁଏ ବେଳେବେଳେ ଯେ ନିରପେକ୍ଷ ଦୃଷ୍ଟିରେ ଦେଖିବାକୁ ଗଲେ ମଧ୍ୟବୟସୀ ସୁଲେଖା ସୁନ୍ଦର ଦିଶୁଛି ଏଇକ୍ଷଣି ଯାହା ତା'ର ତରୁଣୀ ଚେହେରାକୁ ନେଇ କହି ହୋଇ ନ ଥାଆନ୍ତା । ତା' ଦେହର ରଙ୍ଗ ବେଶ୍ ଫିଟି ଯାଇ ନାହିଁ କି ? ଆଉ ତା' ଦେହର ଗୋଲେଇସବୁ ବି' ବେଶି ବାନ୍ଧି ହେଲା ପରି ଦିଶୁଛି... ହେଲେ ଏହିପ୍ରକାର ଭାବର ସଂକ୍ରମଣକୁ ନେଇ ବେଳେବେଳେ ଟିକିଏ ଚମକି ଉଠିଲାରୁ ସେ ହସିଉଠି କୁହନ୍ତି ନିଜକୁ, ଯେ ଇଏ ହେଉଛି ତାଙ୍କ ନିରପେକ୍ଷ ନିରୀକ୍ଷଣର ବଦଭ୍ୟାସ । ମାଷ୍ଟରିଆପଣ । ଯୌନ ଆବେଗର ଧାପେ ନାହିଁ ସେଥିରେ । ଧନ୍ୟବାଦ ।

କିନ୍ତୁ ଉଲ୍ଲେଖଯୋଗ୍ୟ ଯେ ସୁଲେଖାଙ୍କ ସହିତ ଭେଟ ହୋଇଗଲେ ସେ ସହଜସ୍ୱଚ୍ଛନ୍ଦ ନମସ୍କାର- ପ୍ରତିନମସ୍କାର ଏବଂ ସାମାନ୍ୟ କୁଶଳ ସମ୍ଭାଷଣରୁ ଆଗେଇ ଯାଇ ପାରି ନାହାନ୍ତି । ବିଶେଷ ଆଶ୍ଚର୍ଯ୍ୟର ବିଷୟ ଯେ ବଧେଇର ପଦୁଟିଏ ତାଙ୍କ ପାଟିରୁ ବାହାରି ନାହିଁ, ଯଦିଓ ସେଥିର ଯଥେଷ୍ଟ କାରଣ ଥିଲା । କାରଣ ଥିଲା ଯେତେବେଳେ ସେ ନୂଆ ଦଳଟିଏ ଗଢ଼ି ଭୋଟ ଲଢ଼ିବାକୁ ସ୍ଥିର କଲେ । ତହୁଁ ପରବର୍ତ୍ତୀ ଆସେମ୍ବ୍ଲି ନିର୍ବାଚନ ଲଢ଼ି ବିପୁଳ ଭୋଟ୍‌ର ବ୍ୟବଧାନରେ ବିଜୟୀ ହେଲେ ଶାସକ ଦଳର ଜଣେ ବରିଷ୍ଠ ନେତାଙ୍କୁ ପରାସ୍ତ କରି ଏବଂ ଯଥାକ୍ରମେ ବିପକ୍ଷ ଦଳର ନେତା ରୂପେ ନିର୍ବାଚିତ ହେଲେ । ତା'ଛଡ଼ା ତାଙ୍କର ଯେଉଁ ପ୍ରକାର କଥାକୁହା ବଳରାମବାବୁଙ୍କୁ ଉଲ୍ଲସିତ କରୁଥିଲା, ଯେ ସୁଲେଖା ମୋ ଗାନ୍ଧୀବାଦର ଏତେ ପାଖକୁ ଆସିଗଲାଣି, ତାକୁ ନେଇ ସେ କ'ଣ ପ୍ରଶଂସାର ପଦୁଟିଏ କଥା କୁହନ୍ତେ ନାହିଁ ତାଙ୍କୁ, ଫୋନ୍‌ରେ କିମ୍ବା ଚିଠିରେ ? ବେଳେବେଳେ ସେହିପ୍ରକାର ଇଚ୍ଛା ତାଙ୍କ ମନକୁ ଆସେ ସତ, କିନ୍ତୁ ସେ ତାକୁ କାର୍ଯ୍ୟକାରୀ ହେବାକୁ ଦିଅନ୍ତି ନାହିଁ । କୁହନ୍ତି - ନାଇଁ ଥାଉ । ସେମିତି କଥାକୁ ତା'ର କ'ଣ କିଛି ବଧେଇ

ଦେବାର ନ ଥିଲା ତା' ବଳିଭାଇକୁ, ଯାହା ସାଙ୍ଗରେ ତା'ର ବନ୍ଧୁଭାବ ଅମଳିନ ରହିବ ବୋଲି ସେ ଦାବି କରିଥିଲା ସେଦିନ ? ଆଖିଦୁରୁଶିଆ ବୋଲି ତୋର ନୂଆ କି ଚକଚକିଆ ରାଜନୈତିକ ପୋଷାକପହରଣକୁ ଖାଲି ସଫଳତା ବୋଲି କହିବ, ଆଉ ସେମିତି କିଛି ନାହିଁ ମୋ ମାଷ୍ଟରିଆ ଜୀବନରେ ? ଲେକ୍‌ଚରରୁ ପ୍ରଫେସର ହେଲିଣି, ସେ କଥା ଛାଡ଼ । ସିଏ ହୁଏତ ଗୋଟାଏ ଧରାବନ୍ଧା କ୍ରମ । କିନ୍ତୁ ଜଣେ ବିଶିଷ୍ଟ ଅଧ୍ୟାପକ ହିସାବରେ ମୋର ଯେଉଁ ସୁଖ୍ୟାତି ରହିଛି ତା' କ'ଣ ଜଣା ନାହିଁ ତୋତେ ? ନା କେବେହେଲେ ତୋ ଆଖିରେ ପଡ଼ି ନାହିଁ ମୁଁ ଗାନ୍ଧିଦର୍ଶନ ଉପରେ ଯାହା ସବୁ ଲେଖିଛି କିମ୍ବା ସେ ବିଷୟରେ ପ୍ରଦତ୍ତ କେଉଁ ଭାଷଣର ସମ୍ବାଦ ? କିନ୍ତୁ ତୁ ଚୁପ୍ ରହିଛୁ । ଯେହେତୁ ତୋ ବାଟ ଅଲଗା ମୋଠାରୁ, ଯାହା ତୁ ସ୍ପଷ୍ଟ କରି ଦେଇଥିଲୁ ସେଦିନ । ବେଶ୍ । ତା'ହେଲେ ମୁଁ କାହିଁକି ତୋ ବାଟ ଓଗାଳିବି, ତୋତେ ବଧେଇ ଦେବା ଲାଗି ? ନାଇଁ ଥାଉ ।

ଏଇଥିରୁ କ'ଣ ବୁଝିବାକୁ ହେବ ଯେ ବଳରାମବାବୁଙ୍କର ଅଧିକରୁ ଅଧିକ ସମୃଦ୍ଧ ଓ ସମୁଜ୍ଜ୍ୱଳ ହୋଇ ଉଠିଥିବା ଚରିତ୍ର ତଥାପି ଯଥେଷ୍ଟ ଉଦାର ହୋଇ ପାରି ନ ଥିଲା ସୁଲେଖାଜନିତ ସେଇ ଆହତ ଅଭିମାନକୁ ଭୁଲିଯିବା ଲାଗି ? ହୋଇଥିବ ।

ଯାହାହେଉ ବଳରାମବାବୁଙ୍କ ସୁଖର ସଂସାରରେ ସୁଲେଖାଙ୍କ ଗତିବିଧିର ଛାଇ ପଡ଼ିଥିଲେ ମଧ୍ୟ ସେଥିପ୍ରତି ବିଶେଷ ଗୁରୁତ୍ୱ ଦେବାର ନୁହେଁ । ବଳରାମବାବୁ ଅବଶ୍ୟ ସୁଖୀ ଥିଲେ ତାଙ୍କ ପରିବାରକୁ ନେଇ । ପତ୍ନୀ ସରୋଜିନୀଙ୍କୁ ସେ ଯେଉଁ ଭାବରେ ଭଲ ପାଉଥିଲେ ତାକୁ ଖୁଣି ହେବ ନାହିଁ । ବଳରାମବାବୁ ଯେତେବେଳେ ଗାନ୍ଧିଦର୍ଶନ ଉପରେ କିଛି କହିବାକୁ ଚାହାଁନ୍ତି ତାଙ୍କୁ ଏବଂ ସେବିଷୟରେ କହିବସନ୍ତି ଅନେକ ସମୟ ଯାଏଁ, ସରୋଜିନୀ ତାକୁ ମନଦେଇ ଶୁଣିଲା ପରେ ମନେହୁଏ । ପଦୁଟିଏ ପ୍ରଶ୍ନ ପଚାରନ୍ତି ନାହିଁ, ହେଲେ ଫିକ୍‌କିନି ହସିଦିଅନ୍ତି ସ୍ୱାମୀଙ୍କ କଥାକୁହା ଶେଷରେ ଯେ ଧନ୍ୟବାଦ, ତମ କଥା ଶୁଣି ମୋତେ ବେଶ୍ ଭଲ ଲାଗିଲା । ଆଉ ଦାମ୍ପତ୍ୟ କଳହ ? ହଁ, ତା' ମଧ୍ୟ ହୁଏ ବେଳେ ବେଳେ ତାଙ୍କ ଭିତରେ । କିନ୍ତୁ ସେଥିରେ ଜୋର୍ ଥିଲାପରି ଲାଗେ ନାହିଁ । ବଳରାମବାବୁ କ'ଣ ଦି'ପଦ କହିଦେଇ ଆଡ଼େଇ ହୋଇ ଯାଆନ୍ତି ଏବଂ ସରୋଜିନୀ କେଵଳ ମୁହଁ ଫୁଲାନ୍ତି । ସେଇଠୁଁ ପୂର୍ବାବସ୍ଥା ଫେରିଆସେ କିଛି ସମୟ ପରେ, ଲେଉଟାଣିର ମନ୍ଦମଧୁର ଉପକ୍ରମଣିକାକୁ ନେଇ । 'କ'ଣ ଆଉ କପେ ଚା' ଆଣିଦେବି ?' 'ତମ ଆଖିର କଜଳ ଲେସି ହୋଇ ଯାଇଛି, ତାକୁ ପୋଛି ଦେଲେ ଭଲ ହୁଅନ୍ତା ।' (ସରୋଜିନୀଙ୍କର ସଲ୍ଲାସ୍ୟ ଥ୍ୟାଙ୍କ୍ ୟୁ), ସେଇଠୁଁ ସରୋଜିନୀଙ୍କ ଆଡ଼ୁ, 'ଆଜି ସଞ୍ଜବେଳକୁ ଯିବାର ଅଛି ପରା, ତମ ନୂଆ ପ୍ରିନ୍‌ସପାଲ୍‌ଙ୍କ ଘରକୁ ? ତମେ ଯାହା କୁହ ତାଙ୍କ ସ୍ତ୍ରୀ ଟିକିଏ ଅଣ୍ଡିରୀ ଲାଗନ୍ତି ନାହିଁକି ? ବଳରାମବାବୁଙ୍କ ଆଡ଼ୁ ନୀରବ ସ୍ମିତହାସଟିଏ । କେବଳ ସ୍ମିତହାସଟିଏ, କାରଣ ସେତିକିବେଳେ ତାଙ୍କ ମନକୁ ଆସେ ଯେ ସୁଲେଖାର ଚାଲିଚଳଣ ତାଙ୍କୁ ସେମିତି ଲାଗିବ

ପରା । ଏନିଓ୍ୱେ ଦିହେଁ ପୂରାପୂରି ଭିନ୍ନ ପରସ୍ପରଠାରୁ ଯେଝା ଯେଝା ନାରୀତ୍ୱକୁ ନେଇ । ଏହି ଭାବରେ ବଳରାମବାବୁ କଥାଟାକୁ ଅବାନ୍ତର ମନେକରି ତାଙ୍କ ହାତ ବଢ଼େଇ ଦିଅନ୍ତି ପତ୍ନୀଙ୍କ ଆଡ଼କୁ । କଳହ ତୁଟି ଯାଏ ଏବଂ ମନେହୁଏ ଯେ ଏଇଆକୁହିଁ ଭଲପାଇବା, ଉତ୍କୃଷ୍ଟ ଭଲପାଇବା । ଯେତିକି ଉଦାର, ସେତିକି ମଧୁର । ଅର୍ଥାତ୍ ସଚ୍ଚା ଗାନ୍ଧିବାଦୀର ଭଲପାଇବା ଏମିତି ହୋଇଥିବ ବୋଲି ଆଶା କରିବା ଉଚିତ ।

ଏବଂ ଆଦରଣୀୟ ପିଲା ତିନିଜଣ । ଅମରକୁ ଆସି ଷୋଳବର୍ଷ ହେଲାଣି । ତା' ପଛକୁ ଝିଅ ଦି'ଜଣ, ଅନିମା ଓ ତନିମା, ପ୍ରାୟ୍ ତିନିତିନି ବର୍ଷ ବ୍ୟବଧାନରେ । ଏବଂ କାହାରିକୁ ଖୁଣି ହେବ ନାହିଁ ତାଙ୍କ ଚେହେରା କିମ୍ବା ସ୍ୱଭାବ ଚରିତ୍ରକୁ ନେଇ ।

କିନ୍ତୁ କ୍ରମଶଃ ଗୋଟାଏ ଦୁଃଖର କାରଣ ଦେଖାଦେଲା ସେଇ ସୁଖର ସଂସାରରେ ବଡ଼ପୁଅ ଅମରକୁ ନେଇ । କୌଣସିମତେ ମାଟ୍ରିକ୍‌ଟା ପାସ୍ କରିଗଲା ସେ, କିନ୍ତୁ ତା' ଆଗକୁ ପାରିଲା ନାହିଁ । ମାଷ୍ଟରମାନେ କହିଲେ, ମଧ ବିଶେଷଜ୍ଞ ଡାକ୍ତରମାନେ, ଯେ ତା'ର ସ୍ମରଣଶକ୍ତି ମୋଟାମୋଟି ପାସ୍‌ମାର୍କ୍ ଉପଯୋଗୀ ହେଲେ ମଧ ତା'ର "ଆଇ-କିଉ" IQ ଅର୍ଥାତ୍ ସ୍ୱାଧୀନ ବୁଦ୍ଧିବିଚାରର କ୍ଷମତା, ଅତି ନିକୃଷ୍ଟ ଧରଣର । ସେହେତୁ ସେ ନିଜକୁ ମିଶାଇ ପାରୁ ନାହିଁ ବାହାର ଦୁନିଆ ସାଙ୍ଗରେ । ଯାହା ଦାବି କରାଯାଉଛି ତା'ଠାରୁ, ତା' ନିଜ ବୁଦ୍ଧି ଖର୍ଚ୍ଚ କରିବା ଦିଗରେ, ସେ ତା'କୁ ତୁଲେଇ ପାରୁ ନାହିଁ । ବୋକାଙ୍କ ପରି ଅନେଇ ରହୁଛି ତମ ଆଡ଼କୁ ।

ଷାଠିଏ ବର୍ଷ ବୟସରେ ଅଧାପକ ବଳରାମ ନାଏକ ତାଙ୍କ ବୃତ୍ତିରୁ ଅବସର ନେଲେ ଆନୁଷ୍ଠାନିକ ଭାବରେ । ହେଲେ ସେହେତୁ କିଛି କ୍ଷତି ହେଲା ନାହିଁ ତାଙ୍କର । ଅପରନ୍ତୁ ତାଙ୍କ ସ୍ୱେଚ୍ଛାପ୍ରଣୋଦିତ, ଅନ୍ୟକାମ - ଗାନ୍ଧିଦର୍ଶନର ପ୍ରଚାର ତଥା ଯତ୍‌ସାମାନ୍ୟ ସମାଜସେବାର ବେଗ ବଢ଼ି ଚାଲିଲା ଏବଂ ସେଇଥିରେ ସେ ନିଜକୁ ହଜାଇ ଦେଇ ପାରିଲେ ଆନନ୍ଦର ସହିତ । ଏଣେ ଅନିମା ଓ ତନିମା ତାଙ୍କ ପଢ଼ା ଶେଷ କରି ଭଲରେ ଭଲରେ ବାହା ହୋଇ ଗଲେଣି । ଯୋଗ୍ୟ ସ୍ୱାମୀ ଦି' ଜଣଙ୍କର । ଅନିମାର ସ୍ୱାମୀ ରାଜକିଶୋର ରାଉତ ଜଣେ ଆଇ.ଏ.ଏସ୍ ଅଫିସର୍ ଏବଂ ତନିମାର ସ୍ୱାମୀ ଜୟଦେବ ସ୍ୱାଇଁ ଜଣେ ଉଦୀୟମାନ ଶିଳ୍ପପତି । କିନ୍ତୁ ଦୁଃଖ ସେଇ ଗୋଟିଏ । ଛବିଶ ବର୍ଷ ବୟସର ଦରପାଠୁଆ ପୁଅ ଅମର ଘରେ ବସିଛି । ବଳରାମବାବୁଙ୍କ ଦ୍ୱାରା ଉପକୃତ ହୋଇଥିବା ଅନେକ ବନ୍ଧୁ ଆଗେଇ ଆସିଛନ୍ତି କିଛି ପାଲଟା ଉପକାର କରିବା ଲାଗି ସାର୍‌ଙ୍କର, ତାଙ୍କ ଅକାମି ପୁଅଟାକୁ କେଉଁଠି ହେଲେ ଲଗେଇ ଦେଇ । କୋଉ ଦୋକାନରେ, ଫ୍ୟାକ୍ଟରୀରେ ଅବା ପ୍ରାଇଭେଟ୍ ଦପ୍ତରର ରୁଟିନ୍ କାମ, ଯେଉଁଥିରେ ବିଶେଷ ବୁଦ୍ଧି ଖଟେଇବାର ପ୍ରୟୋଜନ ନାହିଁ । କିନ୍ତୁ କେଉଁଥିରେ ହେଲେ ଅମର ପାରି ଉଠି ନାହିଁ । କାମ ଛାଡ଼ିଦେଇ

ଦୀର୍ଘକାଳ ଯାବତ୍ ଆକାଶକୁ ଅନେଇ ରହିବାର ସୁଖକୁ ମୃତ୍ରଛି ପାରି ନାହିଁ । ଅଗତ୍ୟା ମାଲିକମାନଙ୍କର ଅଭିଯୋଗକୁ ଏଡ଼ାଇ ଦେବା ସମ୍ଭବ ହୋଇପାରି ନାହିଁ ଏବଂ ଅମରକୁ ଫେରିଆସିବାକୁ ପଡ଼ିଛି ତା' ବେକାର ଜୀବନକୁ । ଘରେ ବସି ମନଇଚ୍ଛା ଆକାଶକୁ ଅନେଇ ରହି ପାରିବାର ସୁଖ । ହେଲେ କ'ଣ ତା' ଭବିଷ୍ୟତ ? ବସି ଖାଇଲେ ତ ନଈବାଲି ସରେ । କିନ୍ତୁ ବିରଞ୍ଚିବାବୁଙ୍କ ଅମଳର ନଈବାଲି ବି କୋଉଠି ରହିଛି ଆଉ ? ଭୂମିସଂସ୍କାର ଗତ ନାନାଦି ଆଇନ୍ ତଥା ଗାନ୍ଧିବାଦୀ ପୁଅର ଉଦାସୀନତା ଯୋଗୁଁ ପୈତୃକ ସମ୍ପତ୍ତିକୁ କୋଉ 'ସମ୍ପତ୍ତି' ବୋଲି କୁହାଯିବ ନାହିଁ ବର୍ତ୍ତମାନ । ବିରଞ୍ଚିବାବୁ ମଧ୍ୟ ଆଖି ବୁଜିଲେଣି । ବୁଢ଼ୀମାଆ ବଞ୍ଚିଛି, ହେଲେ ପ୍ରାୟଶଃ ଶଯ୍ୟାଶାୟୀ । ଅବସର ପରେ ବଳରାମବାବୁ ଫେରି ଆସି ରହୁଛନ୍ତି ତାଙ୍କ ପୈତୃକ ଘରେ, ତାଙ୍କ ସ୍ତ୍ରୀଙ୍କୁ ନେଇ । ହେଲେ ନାମକୁମାତ୍ର । କାରଣ ଗାନ୍ଧୀ ଦର୍ଶନର ପ୍ରଚାର ତଥା ପରୋପକାର ନାମକ ସମାଜସେବାରେ ତାଙ୍କର ଅଧିକାଂଶ ସମୟ ବାହାରେ କଟୁଛି । କିନ୍ତୁ ଯେତେବେଳେ ଘରକୁ ଫେରି ଦେଖନ୍ତି ତାଙ୍କର ବେକାର ଓ ନିର୍ବୋଧ ବଡ଼ପୁଅକୁ, ସେ ଦୀର୍ଘନିଃଶ୍ୱାସଟିଏ ନ ପକେଇ ରହିପାରନ୍ତି ନାହିଁ । ମେଲାଘରେ ପଡ଼ିଥିବା ପୁରୁଣା ତେଲଚିକିଟା ସୋଫା ଉପରେ ବସିପଡ଼ନ୍ତି ଲଥିକିନି ଏବଂ ପଚାରନ୍ତି ତାଙ୍କ ଅଦୃଷ୍ଟକୁ -

"କାହିଁକି ? କାହିଁକି ଏମିତି ହେଲା ?"

ସେଇଠୁଁ ତାଙ୍କୁ ଶୁଣିବାକୁ ପଡ଼େ ଏଇ ନୀରବ ଭର୍ତ୍ସନା ତାଙ୍କ ନିଜଠାରୁ - "ବଳରାମବାବୁ ! ଏଇ ହେଉଛି ତମ ଗାନ୍ଧିଦର୍ଶନର ଜୀବନ୍ତ ଦୃଷ୍ଟାନ୍ତ, ତମ ନିଜର ଏଇ ଅସ୍ଥିରତା ? ଯେଉଁ ଗୀତା ଗାନ୍ଧିଦର୍ଶନର ଆଧାର, ଆଉ ସେଥିରେ ଅଛି ଯେ ଦୁଃଖରେ ଭାଙ୍ଗିପଡ଼ ନାହିଁ କି ସୁଖରେ ଭାସିଯାଅ ନାହିଁ, ତା'ର ସେଇ ସାରତତ୍ତ୍ୱଟିକୁ କ'ଣ ଭୁଲିଗଲଣି ଯା' ଭିତରେ ?" ବଳରାମବାବୁ ନିଜକୁ ସଜାଡ଼ି ନିଅନ୍ତି ଏବଂ ବିଧାତାଙ୍କୁ କ୍ଷମା ମାଗନ୍ତି । କୁହନ୍ତି, ମୁଁ ଅନେକ କିଛି ପାଇଛି ମୋ ଜୀବନରେ । ଯେଉଁଥିପାଇଁ ମୁଁ କୃତଜ୍ଞ । ଖାଲି ଏଇ ସାମାନ୍ୟ ଦୁଃଖଟା, ଇଏ ବି କ'ଣ ଚାଲିଯିବ ନାହିଁ ଯଥାସମୟରେ ? ହୁଏତ କେଉଁ ଅଭିଶାପର ଫଳ ଭୋଗିବାକୁ ପଡୁଛି ମୋତେ, ଯାହାର ମିଆଦ ସରି ନାହିଁ ଆଜିଯାଏଁ ।

କେଉଁ ଦୋଷ ପାଇଁ ଏଇ ଅଭିଶାପ, ସେ ବିଷୟରେ ଭାବି ଲାଭ ନାହିଁ । ହେଲେ ଥରେ ଗୋଟାଏ ଅଦ୍ଭୁତ ଭାବନା ତାଙ୍କୁ ଚମକେଇ ଦେଲା । ଅମର ହେଉଛି ମୋର ପହିଲି ସନ୍ତାନ । ବାହାଘରର ବର୍ଷେ ନ ପୁରୁଣୁ ଜନ୍ମ ହୋଇଛି । ପହିଲି ପ୍ରେମର ସନ୍ତାନ । କିନ୍ତୁ.. କିନ୍ତୁ.. ଗୋଟିଏ ଖରାପ କଥା, ଅତି କୁତ୍ସିତ କଥା ମନେପଡ଼ି ଯାଉଛି । ଜିନିକୁ ଯେତେ ଭଲ ପାଇଲେ ମଧ୍ୟ ସଂଗମର ବେଳକୁ, କ୍ଲାଇମାକ୍ସ ବେଳକୁ, ଆଉ ଜଣକର ଇମେଜ୍ ହସୁଛି ବେଳେ ବେଳେ ତା' ଜାଗାରେ ରହି । ହସୁଛି ଖିଲି ଖିଲି ହୋଇ...

ଇସ୍ ! ସେଇ ଭୂତର କବଳରୁ ମୁଁ ଅବଶ୍ୟ ଖସିଆସିଲିଣି କେବେଠୁଁ । କିନ୍ତୁ ସିଏ ପ୍ରକୃତରେ କେତେ ଦିନ ଯାଏଁ ଥିଲା ? ଆଉ ସେଇ କେଉଁ ମୁହୂର୍ତ୍ତରେ ଇଏ ତା' ମାଆ ପେଟରେ ରହି ନାହିଁ ବୋଲି କିଏ କହିବ ? ହେ ଭଗବାନ୍ !

ସେଇ ହେଉଛି ମୋ ଦୋଷ । ଘୋର ଦୁର୍ନୀତି । ମୁଁ ତା' ମାଆକୁ ଠକେଇଛି, ତା' କୋଳକୁ ଆମର ପହିଲି ପିଲାଟିକୁ ଆଣିଦେଲାବେଳେ । ତା'ରି ଅଭିଶାପ ମୋ ଉପରେ ପଡ଼ିବ ନାହିଁ ତ ଆଉ କାହା ଉପରେ ପଡ଼ିବ ?

ପ୍ରବୀଣ ଗାନ୍ଧିବାଦୀ ବଳରାମବାବୁ ମଧ୍ୟ ବୁଦ୍ଧିବାଦୀ । ତେଣୁ ସେ ଅନାୟାସରେ ଏଇ ଉଦ୍ଭଟ ସମ୍ଭାବନାକୁ ହସି ଉଡ଼େଇ ଦେଇ ପାରିଥିଲେ । କିନ୍ତୁ ସେଇ ଆତ୍ମଗ୍ଲାନିକୁ ଦୂରେଇ ଦେଇ ପାରୁ ନ ଥିଲେ, ଅମରର ଦୁର୍ଭାଗ୍ୟ ବିଷୟରେ ଭାବିଲା ବେଳେ ।

ଅବସର ନେଲା ପରେ ଆଉ ଗୋଟିଏ ଦାରୁଣ ଦୁଃଖ ତାଙ୍କୁ ଭୋଗିବାକୁ ପଡ଼ିଲା । ପତ୍ନୀ ବିୟୋଗ । ରୁଗ୍ଣା ଓ ବୃଦ୍ଧା ବୋଉକୁ ହରାଇବାର ମାସେ ନ ପୂରୁଣୁ । ଦି'ଦିନ ଜର ପରେ କ'ଣ ହେଲା କେଜାଣି, ଜିନି ଆଖି ବୁଜି ଦେଲା । ଡାକ୍ତର କହିଲେ ମେନିନ୍‌ଜାଇଟିସ୍ । ତୁ ମୋ ଠାରୁ କେତେ ସାନ, ତଥାପି ଚାଲିଯିବୁ ଏମିତି ତରତର ହୋଇ ଅହ୍ୟସୁଲକ୍ଷଣୀ ହେବୁ ବୋଲି ? ଏହିଭାବରେ ବଳରାମବାବୁ ଅଭିମାନ କଲେ ତା' ଉପରେ, ଆଖିରୁ ଲୁହ ପୋଛିଲେ, ହେଲେ ଗୀତାବଚନକୁ ସ୍ମରଣ କରି ନିଜକୁ ଯଥାଶୀଘ୍ର ସଂଯତ କରିନେଇ ପାରିଲେ ଏବଂ ପୁଣି ଲାଗିପଡ଼ିଲେ ତାଙ୍କର ବିଭିନ୍ନ କାମରେ ।

କିନ୍ତୁ ବେକାର ବଡ଼ଭାଇ ଏବଂ ବିପତ୍ନୀକ ହୋଇ ଏକୁଟିଆ ପଡ଼ିଥିବା ବାପାଙ୍କ ପରିସ୍ଥିତିକୁ ଦୁର୍ଦ୍ଦଶା ବୋଲି ମନେକଲେ ସୁଖରେ ଚଳୁଥିବା ଝିଅ ଦି'ଜଣ । ପରସ୍ପର ସହିତ ତଥା ନିଜ ନିଜ ସ୍ୱାମୀଙ୍କ ସହିତ କଥାବାର୍ତ୍ତା ହେଲା ପରେ ସେମାନେ ବାପାଙ୍କୁ ନିମନ୍ତ୍ରଣ କଲେ ତାଙ୍କ ପାଖରେ ଆସି ରହିବା ଲାଗି । କେତେବେଳେ ବଡ଼ଝିଅ ପାଖରେ ତ କେତେବେଳେ ସାନ ପାଖରେ । କ'ଣ ଅସୁବିଧା ଅଛି ? କ'ଣ ଲୋକ ନାହାନ୍ତି ଗଣନାଥପୁରରେ ପୈତୃକ ଘର ଆଉ ଯାହାକିଛି ଜମିବାଡ଼ି ରହିଛି, ତା'ର ଦେଖାଶୁଣା କରିବା ପାଇଁ ? ତମେ ଦି'ଜଣ ମିଛୁଟାରେ ସେଠି ପଡ଼ି ରହିବ କାହିଁକି ? ବଳରାମବାବୁଙ୍କ ଦ୍ୱିଧାଭାବ ଦେଖି ଚପଳା ତନିମା ଆହୁରି ପଦେ କହିଲା - ''କ'ଣ ଝିଅ ହୋଇଛୁ ବୋଲି ଆମର ଯୋଗ୍ୟତା ନାହିଁ ତମର ଆଉ ଭାଇଙ୍କର ଦାୟିତ୍ୱ ନେବା ଲାଗି ? ପୁଅବୋହୂଙ୍କ ପାଖରେ ରହିବାକୁ କହିଲେ ତମେ କ'ଣ ଏମିତି କୁନ୍ଥକୁନ୍ଥ ହେଉଥାଆନ୍ତ ?'' ସେଇଠୁଁ ଗୋଟାଏ ବ୍ରହ୍ମାସ୍ତ୍ର ଛାଡ଼ି ଦେଲା, ବଳରାମବାବୁ ଯାହାର ପ୍ରତିରୋଧ କରିପାରିଲେ ନାହିଁ । କହିଲା - ''ଗାନ୍ଧିଜୀ କ'ଣ କେବେହେଲେ ପସନ୍ଦ କରିଥାଆନ୍ତେ ତମର ଏଇ ପାତର ଅନ୍ତର ଭାବ ?''

କଥା ଛିଣ୍ଡିଗଲା । 'ପାରି ହେବ ନାହିଁ ଏଇ ଝିଅଟାକୁ ।' ଏହି ଭାବରେ ବଳରାମବାବୁ ହସିଦେଇ ପ୍ରସ୍ତାବକୁ ସ୍ୱୀକାର କରିନେଲେ । ତେବେ ପ୍ରାକ୍ଟିକ୍ୟାଲ୍ ଦୃଷ୍ଟିରୁ ସ୍ଥିର କରାଗଲା ଯେ ଏକାସାଙ୍ଗରେ ବାପପୁଅ ଦି'ଜଣଯାକ ଜଣକ ପାଖରେ ନ ରହି ଜଣେ ବଡ଼ ପାଖରେ ତ ଆରଜଣକ ସାନ ପାଖରେ ରହିଲେ ଭଲ ହେବ । ପାଳିକରି ।

ବଡ଼ ଜ୍ୱାଇଁ ରାଜକିଶୋର ଜିଲ୍ଲା ମାଜିଷ୍ଟ୍ରେଟ୍ ହୋଇ ଗୋଟିଏ ବଡ଼ ସହରରେ ଅଛନ୍ତି ଏଇକ୍ଷଣି ଏବଂ ସାନ ଜ୍ୱାଇଁ ଜୟଦେବ 'ତନିମା ଇଣ୍ଡଷ୍ଟ୍ରିଜ୍' ନାମକ ଗୋଟିଏ ଶିଳ୍ପ ସଂସ୍ଥାର ମାଲିକ ହୋଇ ଭଲରେ ଅଛନ୍ତି । ପ୍ରଥମ କିସ୍ତିରେ ବଳରାମବାବୁ ବଡ଼ଜ୍ୱାଇଁ ପାଖରେ ରହିବେ ବୋଲି କହିଲେ, ପ୍ରକାରାନ୍ତରେ ଏବଂ ସମସ୍ତେ ବୁଝିଲେ ତା'ର କାରଣ କ'ଣ ! ଏକାଧିକ ସ୍କୁଲକଲେଜର ବାତାବରଣ ଛଡ଼ା ବାପାଙ୍କ ନୂଆପୁରୁଣା ବନ୍ଧୁ ଅନେକ ମିଳିଯିବେ ସେଠି । ଯାହା ଏତେଟା ସମ୍ଭବ ନୁହେଁ ଜୟଦେବଙ୍କ ରାଜ୍ୟର ଅଭ୍ୟନ୍ତରରେ ଥିବା ଗୋଟିଏ ଛୋଟ ସହରରେ । ହଉ, ସେଇଆ ହେଉ । ତା'ଛଡ଼ା ଜୟଦେବଙ୍କ କଥାରୁ ମନେହେଲା ଯେ ତାଙ୍କ ହାତରେ ଅନେକ ଛୋଟବଡ଼ କାମ ଅଛି ଯାହାକୁ ଅମର ତୁଲେଇ ପାରିବ ବୋଲି ଆଶା କରାଯାଏ । ଜୟଦେବଙ୍କ ବ୍ୟକ୍ତିଗତ ତତ୍ତ୍ୱାବଧାନ ମଧ୍ୟ ତାକୁ ସାହାଯ୍ୟ କରିବ ସେଦିଗରେ । ସେଭଳି ସୁବିଧା ସୁଯୋଗ ମିଳିବ ନାହିଁ ରାଜକିଶୋରଙ୍କ ଅଧୀନରେ ଥିବା ବିଭିନ୍ନ ସରକାରୀ ଦପ୍ତରରେ ।

ଉତ୍ତମ । ସେଇଆ ହେଲା ଏବଂ କ୍ରମଶଃ ପ୍ରଥମ କିସ୍ତିର ବ୍ୟବସ୍ଥାହିଁ ସବୁଦିନିଆ ବ୍ୟବସ୍ଥାରେ ପରିଣତ ହେଲା ।

ବଡ଼ଜ୍ୱାଇଁଙ୍କ ପାଖରେ ରହିବା ହେତୁ ବଳରାମବାବୁଙ୍କୁ ଅଧିକ ସୁଯୋଗ ମିଳିଲା ଦେଖିବାପାଇଁ ଯେ ଆମର ସ୍ୱାଧୀନତୋତ୍ତର ଦେଶ ଓ ସମାଜ କେଉଁ ଭାବରେ ଏବଂ କେତେଦୂର ଆଗେଇ ଗଲାଣି । ତାଙ୍କର ଅନେକ ବନ୍ଧୁ ତାଙ୍କୁ କୁହନ୍ତି, ଦୁଃଖର ସହିତ, ପ୍ରତ୍ୟକ୍ଷ ଉଦାହରଣ ସହ ଯେ ଯତ୍‌ସାମାନ୍ୟ ଅଗ୍ରଗତିକୁ ପ୍ରଗତି ବୋଲି କୁହାଯାଇ ନ ପାରେ ଏବଂ ଏହା ଅବଶ୍ୟ ନୁହେଁ ଗାନ୍ଧିବାଦୀଙ୍କ ସ୍ୱପ୍ନର ଭାରତବର୍ଷ । ବଳରାମବାବୁ ଅଧିକାଂଶ ସମୟରେ ଚୁପ୍ ରହନ୍ତି । କାରଣ ଅଭିଯୋଗ ଅନେକାଂଶରେ ସତହେଲେ ମଧ୍ୟ ସେ ଆଶାବାଣୀ ଶୁଣାଇବାକୁ ଚାହାଁନ୍ତି । ତେଣୁ ସବୁକଥା ଶୁଣନ୍ତି ମନଦେଇ ଏବଂ ତା'ପରେ କୁହନ୍ତି - ''ସବୁର୍ କର ଭାଇ, ସବୁର୍ କର । ସ୍ୱାଧୀନତାକୁ ଯେମିତି କେହି ଦବେଇ ପାରିଲେ ନାହିଁ, ପ୍ରଗତିକୁ ମଧ୍ୟ ସେମିତି କେହି ଅଟକେଇ ରଖିପାରିବେ ନାହିଁ । ହଁ, ଟିକିଏ ଡେରି ହେଉଛି ଅବଶ୍ୟ, ମୁଁ ମାନୁଛି... ।'' ଭାବନ୍ତି ଯେ ତାଙ୍କର ଏହାହିଁ କହିବା କଥା, ଜଣେ ପ୍ରବୀଣ ତଥା ସଚ୍ଚା, ତେଣୁ ଆଶାବାଦୀ ଗାନ୍ଧିବାଦୀ ହିସାବରେ ।

ହେଲେ ତାଙ୍କୁ ଖରାପ ଲାଗିଲା ଏବଂ ସେ ତାଙ୍କ ପ୍ରତିକ୍ରିୟାକୁ ସଜାଡ଼ି ପାରିଲେ ନାହିଁ । ଯେତେବେଳେ ତାଙ୍କର ଜଣେ ବନ୍ଧୁ କହିବସିଲେ ଦିନେ, ବିଭିନ୍ନ ନେତାମାନଙ୍କ 'ଗୁଣ' ଗାଇବାକୁ ଯାଇ -

''ନେତାମାନଙ୍କ କଥା ଛାଡ଼ିଦିଅ, ଆମ ନାରୀଜାତି କୋଉ ପଛରେ ପଡ଼ିଛି ନା କଅଣ ? ଆମ ନେତ୍ରୀମାନେ କୋଉଠୁଁ କୋଉ ଯାଏ ଗଲେଣି ଦେଖୁ ନାହାନ୍ତି ? ଧର ଏଇ ତୁଙ୍ଗନେତ୍ରୀ ହେବାକୁ ବସିଥିବା ସୁଲେଖା ସାହୁ ଜଣକ । ଦିନେ ସେ ଥିଲେ ଜଣେ ଉଗ୍ରବାଦୀ । ଉଗ୍ରବାଦର ପ୍ରବାଦପୁରୁଷ ଖୋଦ୍ ନବୀନ ସାହୁଙ୍କ ଭଉଣୀ ପରା ସେ, ତାଙ୍କୁ କ'ଣ ପାଇଛ କି ? ବିପ୍ଳବର ବଜ୍ରବିଦ୍ୟୁତ୍ ଛିଟିକି ପଡ଼େ ତାଙ୍କର ଦି'ପଦ କଥାରେ । କିନ୍ତୁ କ୍ଷମତାର ଲୋଭ କ'ଣ ନ କରେ ? ସେଇ ପୁଣି ଭୋଟ ମାଗିଲେ ଗୋଟାଏ ନୂଆ ଦଳ ଗଢ଼ି । ଆସେମ୍ବ୍ଲିରେ ବସିଲେ ଏବଂ କାଳକ୍ରମେ ବନିଗଲେ ବିରୋଧୀ ଦଳର ନେତା । ହେଲେ ସେତିକିରେ କ'ଣ ସାଧ ମେଣ୍ଟିଗଲା ବୁଢ଼ୀଙ୍କର ? ନା, ମୁଁ ଯାହା ଶୁଣୁଛି, ସେ ଆଉ ଗୋଟାଏ ବିରାଟ ପଦକ୍ଷେପ ନେବାକୁ ଯାଉଛନ୍ତି ଦେଶ ଓ ରାଜ୍ୟର ପ୍ରଗତି ପାଇଁ, ମଙ୍ଗଳ ପାଇଁ । କ'ଣ ଜାଣନ୍ତି ?''

ସେଇଠୁଁ କହିଲେ ଅର୍ଦ୍ଧବିରାମ ପରେ, ବଳରାମବାବୁଙ୍କୁ ଅବାକ୍ କରିଦେଇ,

''ବୁଢ଼ୀ ସର୍ବମଙ୍ଗଳ ପାର୍ଟିରେ ଜଏନ୍ କରିବେ ପରା ? ଜାଣି ନାହାନ୍ତି ? (ହୋ-ହୋ- ହସ) ଯେମିତିକି ଆସନ୍ତା ଇଲେକ୍ସନ୍‌ରେ ସେ ଗାଦିକୁ ଆସିପାରିବେ । ମନ୍ତ୍ରୀଟିଏ ହେବେ । ରିଏଲ୍ କ୍ଷମତା ମିଳିବ ଯେଉଁଥିରେ...''

'ନା !!' ବଳରାମବାବୁଙ୍କ ପାଟିରୁ ବାହାରିଲା । କିନ୍ତୁ ସେ ଆଉ କିଛି କହିପାରିଲେ ନାହିଁ । ଇଚ୍ଛା ହେଲା ସୁଲେଖାଙ୍କ ତରଫରୁ କିଛି କହିବା ଲାଗି ଯେ ସେ ସେମିତିକା ଲୋକ ନୁହଁନ୍ତି । କିନ୍ତୁ କଥାଟା ଏତେ ବିସ୍ମୟଜନକ ଥିଲା ତାଙ୍କ ପାଇଁ ଯେ ସେ କ'ଣ କହିବେ ବୋଲି ବୁଝିପାରିଲେ ନାହିଁ । ମଧ ତାଙ୍କୁ ରାଗ ଲାଗିଲା ଏବଂ ସେ ଯଥାଶୀଘ୍ର ବିଦାୟ ନେଇ ଚାଲିଆସିଲେ ସେଠୁଁ, କୌଣସି କାମର ବାହାନା କରି ।

ବିସ୍ମୟ ! ସୁଲେଖା ସର୍ବମଙ୍ଗଳ ପାର୍ଟିରେ ଜଏନ୍ କରିବାକୁ ବସିଛି ? ତା' କେମିତି ହେବ ? ଗୋଟାଏ ଦଳ ଯାହାର କୌଣସି ନୀତି ନାହିଁ, ସମସ୍ତଙ୍କର ମଙ୍ଗଳ କରିବା ଆଳରେ ସବୁ ଅନ୍ୟାୟ ଅବିଚାରକୁ ଗୋଳେଇ ପୋଳେଇ ଦିଏ, ତେଣୁ ବସ୍ତୁତଃ ନ୍ୟସ୍ତସ୍ୱାର୍ଥ ପେଟୁଆମାନଙ୍କ ପ୍ରତିନିଧି ଏବଂ ଆମର ପହିଲା ନମ୍ବର ଶତ୍ରୁ - ଏମିତି କେତେ କଥା ନ କହିଛି ସୁଲେଖା ଏଇ ପାର୍ଟି ବିଷୟରେ ? କିନ୍ତୁ ବର୍ତ୍ତମାନ ତା'ରି ସାଙ୍ଗରେ ଯୋଗ ଦେବ ? ନା, ତା' ହୋଇ ନ ପାରେ । କିନ୍ତୁ ବିସ୍ମୟଠାରୁ ବଳି ପଡ଼ିଥିଲା କ୍ରୋଧ ସେଇ ଲୋକଟା ଉପରେ । ଧର ବା ସେ ସେମିତି କିଛି କରିବାକୁ ଯାଉଛି, ତୁ କେମିତି ଚଟ୍‌କିନି କହିଦେଉଛୁ

ଯେ ଗାଦିକୁ ଆସିବା ପାଇଁ ସେ କରୁଛି ଏମିତିକା କାମ ? ତୁ କଣଟା ଜାଣିଛୁ ତା' ବିଷୟରେ ? ନା, ତା' ହୋଇ ନ ପାରେ । ଅସମ୍ଭବ । ଅନ୍ୟ କିଛି କାରଣ ଥିବ, ଯାହାର କୌଣସି ସମ୍ପର୍କ ନାହିଁ ତା' ନିଜର ସଂକୀର୍ଣ୍ଣ ସ୍ୱାର୍ଥ ସାଙ୍ଗରେ । ମଧ୍ୟ ତାଙ୍କ କ୍ରୋଧର ଆଉ ଗୋଟାଏ କାରଣ ଥିଲା । ଲୋକଟା 'ବୁଢ଼ୀ' 'ବୁଢ଼ୀ' ବୋଲି କହି ଚାଲିଛି ସୁଲେଖାକୁ । ହୋଇପାରେ ଯେ ତା'ର ବୟସ ହେଲାଣି, ମୋଠାରୁ ଦି' ତିନି ବର୍ଷ ସାନ । କିନ୍ତୁ ଖାଲି ବୟସକୁ ନେଇ କେହି ବୁଢ଼ା ହୁଏ ନାହିଁ । ତା'ର ସେଇ ବାଳିକାସୁଲଭ ସରାଗ, ଆବେଗ, ପ୍ରାଣପ୍ରାଚୁର୍ଯ୍ୟ... ମୂର୍ଖ, ତୁ କ'ଣଟା ଜାଣିଛୁ ତା' ବିଷୟରେ ?

କିନ୍ତୁ ମୂର୍ଖ କି ନିନ୍ଦୁକ ହେଉ ପଛେ, ସେ ଠିକ୍ ଶୁଣିଥିଲା । ସୁଲେଖା ସାହୁ ଘୋଷଣା କଲେ କିଛିଦିନ ପରେ ଯେ ସେ ସର୍ବମଙ୍ଗଳ ପାର୍ଟିରେ ଯୋଗ ଦେଇଛନ୍ତି । କହିଲେ, ମୁଁ ବୁଝିବିଚାରି ଯୋଗ ଦେଇଛି ଏଇ ପାର୍ଟିରେ । ମୁଁ କେବେହେଲେ କେଉଁ ମଣିଷକୁ, ଦଳକୁ, ଅବା ଥିଓରିକୁ ଅଛୁଆଁ କରି ରଖି ନାହିଁ । ଆଜି ମୋର ମନେହେଉଛି ଯେ ଇଏ ପୂର୍ବର ସେଇ ଦଳ ନୁହେଁ, ଯେଉଁମାନେ ସର୍ବଜନଙ୍କ ମଙ୍ଗଳ କରିପାରୁ ନ ଥିଲେ, କେଉଁ ଭୟ ଅବା ଅକ୍ଷମତା ଯୋଗୁଁ । ଆଜି ସେଇ ଭୟ ତୁଟି ଯାଇଛି ଏବଂ ସେମାନେ ଅଳ୍ପବହୁତ ସାହସୀ ହୋଇ ଉଠିଛନ୍ତି ବୋଲି ମୋର ବିଶ୍ୱାସ । ସେହେତୁ ମୋର ଆଶା ଯେ ତାଙ୍କ ସାଙ୍ଗରେ ହାତ ମିଳେଇଲେ, ସେମାନଙ୍କୁ ଆହୁରି ନିର୍ଭୀକ କରିପାରିଲେ, ଯଥାର୍ଥରେ ମଙ୍ଗଳ ହେବ ସମାଜର, ଆମ ସମସ୍ତଙ୍କର । ବଡ଼, ସାନ, ଧନୀ, ଦରିଦ୍ର, ସମସ୍ତଙ୍କର ଏବଂ ତାହାହିଁ ଭବିଷ୍ୟତର ଡାକରା, ସେଇ ସର୍ବସୁନ୍ଦର ସାମ୍ୟବାଦର ସ୍ୱର୍ଗ ।

ଆଃ ! କିଏ କହିଲା ସୁଲେଖା ତୁ ଗାନ୍ଧିବାଦୀ ନୁହଁ ? ତୁ ବଦଳିଛୁ, ଆଶାତୀତ ଭାବରେ ବଦଳିଛୁ । ଅନେକ ଧନ୍ୟବାଦ । ବଳରାମବାବୁ ଉଲୁସି ଉଠିଲେ ବୋଲି କହିଲେ ଭୁଲ୍ ହେବ ନାହିଁ । କିନ୍ତୁ ତଥାପି ତାଙ୍କର ହାତ ଚଳିଲା ନାହିଁ, ଧନ୍ୟବାଦର ଚିଠି ଖଣ୍ଡେ ଲେଖିବାପାଇଁ ତାଙ୍କ ପାଖକୁ ।

ଏପରିକି ସେ ତାଙ୍କୁ ବଧେଇ ଦେଲେ ନାହିଁ, ଦେଇପାରିଲେ ନାହିଁ, ଯେତେବେଳେ ପରବର୍ତ୍ତୀ ନିର୍ବାଚନରେ ମଳିନ ପଡ଼ି ଆସିଥିବା ସର୍ବମଙ୍ଗଳ ପାର୍ଟି ପୁଣି ତେଜି ଉଠିଲା, ନେତ୍ରୀ ସୁଲେଖାଙ୍କ ସମେତ ଅନ୍ୟ କେତେକ ନବାଗତ ଶୁଭାକାଙ୍କ୍ଷୀମାନଙ୍କ ସହଯୋଗରେ ଏବଂ ଯେଉଁ ନୂଆ ମନ୍ତ୍ରିମଣ୍ଡଳ ଗଢ଼ାଗଲା, ସୁଲେଖା ମୂଳରୁ ରହିଲେ ସେଥିରେ । ମୁଖ୍ୟମନ୍ତ୍ରୀଙ୍କ ବିଶ୍ୱସ୍ତ ପାଞ୍ଚଜଣଙ୍କ ଭିତରେ ଏବଂ କିଛିଦିନ ପରେ ଦଳର ବିଶେଷ ବୈଠକରେ ମୁଖ୍ୟମନ୍ତ୍ରୀଙ୍କ ଗୋଟିଏ ପ୍ରସ୍ତାବ ଗୃହୀତ ହେଲା ଯେ ସ୍ୱନାମଧନ୍ୟା ନେତ୍ରୀ ସୁଲେଖା ସାହୁଙ୍କୁ ଅନୁରୋଧ କରାଯାଉ ଉପମୁଖ୍ୟମନ୍ତ୍ରୀ ହେବାପାଇଁ । ସୁଲେଖା ସେଇ ଅନୁରୋଧକୁ ବେଶିଦିନ ଟାଳିଦେଇ ପାରିଲେ ନାହିଁ ।

ବଳରାମବାବୁ । ତଥାପି ତମର ମନ ହେଉ ନାହିଁ ଅଭିନନ୍ଦନର ଚିଠିଟିଏ ପଠେଇବାପାଇଁ ତାଙ୍କ ପାଖକୁ ? ଭାବୁନ ସେ କେତେ ଖୁସି ହୁଅନ୍ତେ ତମଠୁଁ, ଖାସ୍ ତମଠୁଁ ଚିଠି ଖଣ୍ଡେ ପାଇଲେ ?

ହଁ, ପଠେଇବି । ପଠେଇବା ଉଚିତ । କିନ୍ତୁ ସେ କିଛି ଖରାପ ଭାବିବ ନାହିଁ ତ ? ଭାବିବ ନାହିଁ ତ ଯେ ଆଜିଯାଏଁ ମୁଁ ଚୁପ୍ ଥିଲି, ତା'ର ପାଖ ମାଡୁ ନ ଥିଲି, କିନ୍ତୁ ଆଜି ସେ ମନ୍ତ୍ରୀ ହେଲାରୁ...

ଧ୍ୟାତ୍ ! ଉଦାର ମନୋଭାବ କ'ଣ ଖାଲି ତମର ଅଛି, ତା'ର ନାହିଁ ? ସେ ଗାନ୍ଧିବାଦର ଏତେ ପାଖକୁ ଆସିଗଲାଣି ବୋଲି କହୁଛ, ତଥାପି ଏମିତିକା ସନ୍ଦେହ ଆସୁଛି ତମ ମନରେ ? ତା'ଛଡ଼ା ଏତିକି କ'ଣ ବୁଝିପାରୁନ ବଳରାମବାବୁ, ଯେ ବିଗତଅତୀତ ହେଲେ ମଧ୍ୟ ସେବେଳର ସମ୍ପର୍କ ମିଛ ନ ଥିଲା ? ତେଣୁ ତାଙ୍କୁ ମନେ ପକେଇଲେ କାହାରି କିଛି କ୍ଷତି ହେବା ଦୂରର କଥା, ବିଶେଷ ଖୁସି ଲାଗିବ ନାହିଁ ତମ ଦି'ଜଣଙ୍କୁ ?

ଏହି ସଂକ୍ରାନ୍ତରେ ଗୋଟାଏ ଆଶା ହଠାତ୍ ଝଲିଉଠିଲା ତାଙ୍କ ମନରେ । ହତଭାଗା ଅମର ପାଇଁ ଅନ୍ୟମାନେ ସିନା ବିଶେଷ କିଛି କରିପାରିଲେ ନାହିଁ, ଜୟଦେବର ଫ୍ୟାକ୍ଟରୀମାନଙ୍କରେ ମଧ୍ୟ କୌଣସି ଉନ୍ନତିର ଲକ୍ଷଣ ଦେଖଉ ନାହିଁ ମୋର ଏଇ ଦରବୁଢ଼ା ପୁଅଟା, କିନ୍ତୁ ତା'ର ଭାଗ୍ୟ ଫେରିଆସନ୍ତା ନାହିଁ ମନ୍ତ୍ରୀଙ୍କର ଶୁଭଦୃଷ୍ଟି ପଡ଼ିଲେ ? ଆଇ ମିନ୍ ସୁଲେଖା ନାମ୍ନୀ ମନ୍ତ୍ରୀଙ୍କର ? କହିବାକୁ ଗଲେ ମନ୍ତ୍ରୀ ମହୋଦୟା, ତମର ବି କଣ ଗୋଟାଏ ଦାୟିତ୍ୱ ନାହିଁ ଏ ଦିଗରେ ? ବଳରାମବାବୁ ମନେପକେଇଲେ ବାହାଘର ପରର ସେଇ ଫ୍ୟାଣ୍ଟାସିକୁ, ଗୋଟାଏ ମଜାକଥା ହିସାବରେ ।

କିନ୍ତୁ ... କିନ୍ତୁ ... ସେ ଅନ୍ୟଥା ଭାବିବ ନାହିଁ ତ ?

ଏହି ଭାବରେ ଦିନ ଗଡ଼ିଗଲା ଏବଂ ଲେଖିବେ ଲେଖିବେ ବୋଲି ଅଭିନନ୍ଦନ ପତ୍ରଟିଏ ଲେଖିପାରି ନାହାନ୍ତି ବଳରାମବାବୁ ନବନିଯୁକ୍ତ ମନ୍ତ୍ରୀ ଏବଂ ତାଙ୍କ ବିଗତ ଅତୀତର ଏକ ଅତିବିଶିଷ୍ଟ ଅତିବିଶିଷ୍ଟ ପାଖକୁ ।

ଇତିମଧ୍ୟରେ ବଳରାମବାବୁ କ୍ୟାପିଟାଲ୍‌ରେ ରାଜ୍ୟସରକାରଙ୍କ ଅନ୍ୟତମ ସଚିବ ପଦବୀରେ ରହିଥିବା ରାଜକିଶୋରବାବୁଙ୍କ କୋଠିରୁ ଆସି ରହିଲେଣି 'ପ୍ରଦୋଷବିଳାସ'ରେ । ଏଇ ସ୍ଥାନ ପରିବର୍ତ୍ତନର ସଂକ୍ଷିପ୍ତ ଇତିହାସ ଏହି ପ୍ରକାର-

ସୁଯୋଗ ପାଇଲାକ୍ଷଣି ରାଜକିଶୋରବାବୁ ବାଧ୍ୟ ହେଲେ ବାପାଙ୍କୁ ଫୁସୁଲେଇବାପାଇଁ, ପତ୍ନୀ ଅନିମାଙ୍କ ସାଙ୍ଗରେ କଥାଟାକୁ ପୂରାପୂରି ବୁଝାଇ ସାରିଲା ପରେ, ଯେ ଆପଣ ସେଇଠି ଯାଇଁ ରୁହନ୍ତୁ । କ୍ୟାପିଟାଲ୍‌ର ଉପକଣ୍ଠରେ ଥିବା ଏଇ

ହୋଟେଲ୍‌ତୁଲ୍ୟ ଜାଗାଟିରେ, ଯାହା ଖାସ୍ ବୟସ୍କ ଲୋକମାନଙ୍କ ପାଇଁ ଗଢ଼ା ହୋଇଛି । ମୋର ଜଣେ କଲେଜ୍ ସାଙ୍ଗର ପରିକଳ୍ପନା ଏବଂ ସେଇ ତା'ର ମାଲିକ । କହିଲା, ଯାକୁ କୋଉ 'ଓଲ୍‌ଡ ଏଜ୍ ହୋମ୍' ବୋଲି ଭାବ ନାହିଁ, କାରଣ ଗୋଟାଏ ଫାଷ୍ଟ୍‌କ୍ଲାସ୍ ହୋଟେଲ୍‌ର ସବୁ ସୁବିଧା ସୁଯୋଗ ମିଳିବ ଏଠି । କହିବାକୁ ଗଲେ ଅଧିକ, କାରଣ ପ୍ରତ୍ୟେକ ଅନ୍ତେବାସୀକୁ ସ୍ପେଶାଲ୍ ଗେଷ୍ଟ ଭାବରେ ନିଆଯିବ, ତା'ର ମନପସନ୍ଦ ଖାଇବାପିଇବାଠାରୁ ଆରମ୍ଭ କରି ତା' ରୁମ୍‌ର ଝରକା କବାଟରେ ଲଗା ହୋଇଥିବା ପରଦା ଯାଏଁ । ଯଥାର୍ଥରେ ପ୍ରଦୋଷବିଳାସ । ସେମାନଙ୍କର ଚାର୍ଜ୍ ଅବଶ୍ୟ କିଛି ଅଧିକା, କିନ୍ତୁ ସେ ବିଷୟରେ ଆପଣଙ୍କର ଭାବିବାର କ'ଣ ଅଛି ? ଆମେ କ'ଣ ବୁଝିବୁ ନାହିଁ ସେ କଥା ? ତା'ଛଡ଼ା ଆପଣ କ'ଣ କୋଉ ଦୂରକୁ ଚାଲିଯିବେ ନା କଅଣ ? ଏଇଠି ପାଖରେ ଥିବେ ଆମ ହାତ ପାହାନ୍ତାରେ ଏବଂ ଆମେ ଥରକୁ ଥର ଯାଇ ଦେଖି ଆସୁଥିବୁ ଆପଣଙ୍କୁ । ତଥାପି ଆପଣଙ୍କର ଯଦି ମନ ନ ଲାଗିଲା ସେଠି ଆପଣ କ'ଣ ଫେରି ଆସିପାରିବେ ନାହିଁ ଆମ ପାଖକୁ, ଯେ କୌଣସି ମୁହୂର୍ତ୍ତରେ ? ...

ରାଜକିଶୋରବାବୁ ଏହି ଭାବରେ ଫୁସୁଲାଇଲେ ତାଙ୍କର ଶ୍ୱଶୁର ମହାଶୟଙ୍କୁ ତାଙ୍କର କୋଠି ଛାଡ଼ି ଅନ୍ୟତ୍ର ଚାଲିଯିବାପାଇଁ, ତା'ର କାରଣ କେବଳ ଗୋଟିଏ । ବାପାଙ୍କର 'ପରୋପକାର' ବ୍ରତ ଏମିତି ବଢ଼ି ବଢ଼ି ଚାଲିଛି ଯେ ଜଣେ ବରିଷ୍ଠ ଅଧିକାରୀ ହିସାବରେ ତାଙ୍କ ସୁନାମକୁ ବାଧା ହେଲାଣି । ଲୋକେ ସହଜେ ଭାବୁଛନ୍ତି, କଥାଟା ଏ କାନରୁ ସେ କାନ ହେବାରୁ, ଯେ ଇଏ ଗୋଟାଏ ଭିତିରିଆ ଧନ୍ଦା ଚାଲିଛି, ଯେଉଁଥିରେ ଜ୍ୱାଇଁଙ୍କର ପ୍ରଚ୍ଛନ୍ନ ହାତ ରହିଥିବ ନିଶ୍ଚୟ ଏବଂ ବେଶ୍ କିଛି ଫାଇଦା ହେଉଛି ଦି' ଜଣଙ୍କର, ତାଙ୍କ ଉପକାରର ଫିସ୍ ହିସାବରେ ।

ବିଭିନ୍ନ କିସମର ଦୁଃଖୀ ସେମାନେ, ଯେଉଁମାନେ ଆସନ୍ତି ବଳରାମବାବୁଙ୍କ ପାଖକୁ, ତାଙ୍କର ସୁନାମ ବିଷୟରେ ଅବଗତ ହୋଇ । କେଉଁ ବୁଢ଼ାବାପ ଆସୁଛି ତା'ର ପୁଅକୁ ଧରି, ଯେ ପରୀକ୍ଷାରେ ବାରମ୍ବାର ଫେଲ୍ ହେଉଛି, ହେଲେ କେବଳ ଗୋଟାଏ ସବ୍‌ଜେକ୍ଟ୍‌ରେ । ଧର ଗଣିତ । ଗୋଟିଏ ବୋଲି ପୁଅ ଆଖ୍ୟା, ତିନିତିନିଟା ଝିଅ । ଅମରର ବାପା ତା' ଦୁଃଖରେ ଅଭିଭୂତ ହୋଇ ପଡ଼ନ୍ତି । ତା' ପାଟିରୁ କଥା ନ ସରୁଣୁ କୁହନ୍ତି, ହଉ ମୁଁ ଦେଖିବି ଏବଂ ତା' ପରେ କେଉଁ ଶିକ୍ଷକବନ୍ଧୁଙ୍କ ପାଖକୁ ଯାଆନ୍ତି ଏବଂ ଏଭଳି ସାହାଯ୍ୟ ଯୋଗାଇ ଦିଅନ୍ତି ବାରମ୍ବାର ଫେଲ୍ ହେଉଥିବା ପୁଅକୁ ଯେ ଆସନ୍ତା ପରୀକ୍ଷାରେ ସେ କେବଳ ପାସ୍ କରିଯାଏ ନୁହେଁ । ଗଣିତରେହିଁ ଫାଷ୍ଟ୍‌କ୍ଲାସ୍ ମାର୍କ୍ ରଖେ । ନିନ୍ଦୁକମାନେ କୁହନ୍ତି ଯେ ପରୀକ୍ଷା ପେପର୍‌ରେ ଥିବା ପ୍ରଶ୍ନଗୁଡ଼ାକ ସେ ଆଗରୁ ଜାଣିସାରିଥିଲା । ଆଉ ଗୋଟିଏ ଧରଣର ଦୁଃଖୀ ହେଲା, ଯାହାକୁ ଚାକିରି ଖଣ୍ଡେ ମିଳୁ ନାହିଁ । ମାଟ୍ରିକ୍ ପାସ୍ କରିଛି, ହେଲେ ଚପରାସୀଟିଏ ହୋଇପାରୁ ନାହିଁ । ବି.ଏ. ପାସ୍ କରିଛି, ହେଲେ କିରାଣି

ଚାକିରିଟିଏ ଜୁଟୁ ନାହିଁ ତାକୁ । ବଳରାମବାବୁ ମନଦେଇ ଶୁଣନ୍ତି ତା' ଦୁଃଖର କାହାଣୀ ଏବଂ କୁହନ୍ତି, ହଉ ଦେଖିବି । ସେଇଠୁଁ କେଇଟା ଫୋନ୍ କରି ସାରିଲା ପରେ ବାହାରି ପଡ଼ନ୍ତି ଦିନେ, ପ୍ରାର୍ଥୀଠାରୁ ଆଣିଥିବା କାଗଜପତ୍ର ଧରି, ତାଙ୍କର କେଉଁ ବନ୍ଧୁ ପାଖକୁ । ଯେ ଦୁଃଖୀର ସାହାଯ୍ୟରେ ଆସିପାରିବ । ଚାକିରି ପାଇଁ ବଛାବଛି କରିବା ମାଧ୍ୟମରେ, ତାହା ଲିଖିତ ପରୀକ୍ଷା ହେଉ ବା ମୌଖିକ ଇଣ୍ଟରଭିଉ ଏବଂ ଅଧିକାଂଶ କ୍ଷେତ୍ରରେ ବଳରାମବାବୁ ସଫଳ ହୁଅନ୍ତି । ଫଳରେ ତାଙ୍କର ସୁନାମ ବଢ଼ି ବଢ଼ି ଚାଲିଛି ! ହେଲେ ରାଜକିଶୋରବାବୁଙ୍କ ଇମେଜକୁ ଯଥେଷ୍ଟ ବାଧା ହେଲାଣି ବୋଲି ତାଙ୍କର ମନେହୁଏ । କିନ୍ତୁ କ'ଣ କରିବେ ବୋଲି ତାଙ୍କୁ ବୁଦ୍ଧି ଦିଶୁ ନ ଥିଲା ଆଜିଯାଏଁ, 'ପ୍ରଦୋଷ ବିଳାସ'ର ବିକଳ୍ପ ତାଙ୍କ ମନକୁ ଆସିବା ପୂର୍ବରୁ ।

ଥରେ ଅଧେ ସେ କହିଛନ୍ତି ବାପାଙ୍କୁ ଏ ବିଷୟରେ । ତାଙ୍କ କ୍ୱାଇଁର କିଭଳି ଅନିଷ୍ଟ ହେଉଛି ସେକଥା ନ କହି, ତାଙ୍କ ନିଜର ଗାନ୍ଧିବାଦୀ ନୀତିବୋଧକୁ ଆହ୍ୱାନ କରିଛନ୍ତି । କହିଛନ୍ତି - "ବାପା, ମୁଁ ବୁଝୁଛି ଯେ ସେମାନେ ପ୍ରକୃତରେ ଦୁଃଖୀ ହୋଇଥିବେ ଏବଂ ହୁଏତ କାହାପ୍ରତି ଅନ୍ୟାୟ କରାଯାଇଥିବ । କିନ୍ତୁ ଆଇନ୍‌କାନୁନ୍ ନୀତିନିୟମକୁ ଆଡ଼େଇ ଦେଇ ସେମାନଙ୍କୁ ଏମିତି ସାହାଯ୍ୟ କରିବାଟା କ'ଣ ଉଚିତ ହେଉଛି ? ଆପଣଙ୍କ ଭଳି ଲୋକକୁ କ'ଣ ଶୋଭା ପାଉଛି ଏମିତିକା କାମ, ଯାହାକୁ ଧରାଧରି, କୁହାବୋଲା ବୋଲି କୁହାଯିବ ?"

କିନ୍ତୁ ଉତ୍ତରରେ ବଳରାମବାବୁ କୁହନ୍ତି, ତାଙ୍କର ବଦାନ୍ୟ ହସଟିଏ ବାଢ଼ି ଦେଇ, "ଆରେ, ମୁଁ କ'ଣ କାହାରି ଚାପରେ କରୁଛି ଏମିତିକା କାମ ? ନା ପଇସାଟିଏ ନେଉଛି କାହାଠୁଁ ? କିନ୍ତୁ ଯେଉଁଠି ମୋ ମନ କହୁଛି ଯେ ଲୋକଟା ପ୍ରକୃତରେ ଦୁଃଖୀ ଏବଂ ସେଇ ଦୁଃଖ ପାଇଁ ତାକୁ ଦୋଷ ଦେବାର ନୁହେଁ, ସେଠି କ'ଣ ଖାଲି ସମଦୁଃଖୀ ହୋଇ ରହିଗଲେ ହେଲା ? ମୁଁ କ'ଣ କିଛି କରିପାରିବି ନାହିଁ ତା' ପାଇଁ ? ଏହିପ୍ରକାର ଭାବ ଯଦି ମାଡ଼ିବସେ ମୋତେ ଏବଂ ମୁଁ ଯଦି ଧାଇଁଯାଏ ମୋର ଜଣେ ଠିକଣା ବନ୍ଧୁ ପାଖକୁ, ଯେ ତାକୁ କିଛି ସାହାଯ୍ୟ କରିପାରେ ତା' ଦୁଃଖକୁ ଘୁଞ୍ଚାଇବା ଦିଗରେ ସେଥିରେ ମୋର କିଛି ଦୋଷ ଅଛି ବୋଲି ଭାବୁଛ ? ସେଥିରେ କେଉଁ ଆଇନ୍‌କାନୁନ୍‌ର ଉଲ୍ଲଂଘନ ହେଉ, ସିଷ୍ଟମ୍‌କୁ ବାଧା ହେଉ କି ତାକୁ ତମେ ଧରାଧରି କୁହାବୋଲା ବୋଲି କୁହ ? ନାଇଁ ବାବୁ, ମୁଁ ଦୋଷୀ ନୁହେଁ । ଅନ୍ତତଃ ଗାନ୍ଧିଜୀ ମୋତେ ଦୋଷୀ ବୋଲି ଭାବି ନ ଥାଆନ୍ତେ..."

ଏହା ପରେ ରାଜକିଶୋରବାବୁଙ୍କର ସାହସ ହୁଏ ନାହିଁ ଶ୍ୱଶୁରଙ୍କ ସାଙ୍ଗରେ ତର୍କ କରିବା ଲାଗି । ମନେହୁଏ ବାପାଙ୍କର ବ୍ୟଥିତ ଭାବ ଦଗ୍ଧ ମୁହଁରୁ ଯେ ସେ ତାଙ୍କୁହିଁ

ଦୋଷ ନ ଦେଇ ରହିପାରୁ ନାହାଁନ୍ତି ଯେ ତୁ ମୋ ଲାଗିଁ ହୋଇ ଏଭଳି ପ୍ରଶ୍ନ କରିପାରୁଛୁ, ମୋର ପରୋପକାର ବ୍ରତକୁ ନେଇ ।

ଏହି ପରିସ୍ଥିତିରେ 'ପ୍ରଦୋଷ ବିଳାସ'ର ପ୍ରସ୍ତାବ ଗୋଟାଏ ଚମତ୍କାର ସୁଯୋଗ ଆଣିଦେଲା ରାଜକିଶୋରବାବୁଙ୍କ ପାଇଁ । ବାପା ଯଦି ରାଜି ହୋଇ ଯାଆନ୍ତି ନା, ତା'ହେଲେ ଆଉ କୌଣସି ଝମେଲା ରହିବ ନାହିଁ । ସେଣିକି ସେ ଯାହା କରନ୍ତୁ, ଆଉ ସେଥିରେ କୋଉ ଗାନ୍ଧିବାଦୀ ନୀତି ଆଉ କି ଅନୀତି, ଅଥବା ଦୁର୍ନୀତି, ସେକଥା ସେଇ ବୁଝିବେ । ମୋର ସେଥିରେ କିଛି ଯାଏ ଆସେ ନାହିଁ ।

ବଳରାମବାବୁ ରାଜି ହୋଇଗଲେ । ପ୍ରସ୍ତାବର ଭିତିରି ଉଦ୍ଦେଶ୍ୟ ବୋଧହୁଏ ସେ କିଛିଟା ଠଉରେଇ ପାରିଥିଲେ, ହେଲେ ସେଥିରେ ସେ ବିଚଳିତ ହେବାକୁ ଚାହିଁଲେ ନାହିଁ । ଭାବିଲେ ଯେ ମନ୍ଦ ହେବ ନାହିଁ ସେଠି ଯାଇଁ ରହିଲେ । ସମବୟସ୍କମାନଙ୍କର ସାହଚର୍ଯ୍ୟ ବେଶି ଉପଯୋଗୀ ହେବ ତାଙ୍କ ପାଇଁ । ସେବେଳରେ ଯେଉଁମାନେ ଜନ୍ମ ହୋଇଛନ୍ତି, ଗାନ୍ଧିଯୁଗର ଆବିର୍ଭାବ ବେଳେ ତାଙ୍କ ମାନସିକତା ବେଶି ଖାପ୍ ଖାଇବ ତାଙ୍କ ସାଙ୍ଗରେ । ତେଣୁ ଏକା ମାପର ଭାବତରଙ୍ଗରେ ଆଳାପ ଆଲୋଚନା କରି ହେବ । ଭଲ ଲାଗିବ ।

ଏହି ଭାବରେ ସେ ଆସି ପହୁଞ୍ଚିଛନ୍ତି 'ପ୍ରଦୋଷ ବିଳାସ'ରେ ଆଜିକୁ ପ୍ରାୟ ଆଠମାସ ହେଲା । ମନ୍ଦ ଲାଗୁ ନାହିଁ ଏଇ ନୂଆ ଜୀବନ । ଯଦିଓ ଏଠିକା ଲୋକମାନେ ଆଳାପ ଆଲୋଚନାର ବିଶେଷ ଆଗ୍ରହୀ ବୋଲି କହିହେବ ନାହିଁ । ବିଶେଷତଃ ତାଙ୍କର ପଡ଼ୋଶୀ ଡଃ ସେନ୍ ଜଣକ ଠାରୁ ସେ ବହୁତ ଆଶା କରିଥିଲେ, କାରଣ ତାଙ୍କର ବିଦ୍ୟାବୁଦ୍ଧି ଓ ସଚ୍ଚୋଟପଣିଆ ବିଷୟରେ ସେ ଅନେକ କିଛି ଶୁଣିଛନ୍ତି । କିନ୍ତୁ ଭଦ୍ରଲୋକ ଯତ୍‌ସାମାନ୍ୟ କୁଶଳ ସମ୍ଭାଷଣ ଛଡ଼ା କୌଣସି ବାର୍ତ୍ତାଳାପର ଆଗ୍ରହୀ ନୁହଁନ୍ତି ବୋଲି ମନେହୁଏ । ହେଲେ ବଳରାମବାବୁଙ୍କୁ ନିରାଶ ହୋଇ ବସି ରହିବାର ସମୟ ମିଳିଲା ନାହିଁ । କାରଣ କ୍ରମଶଃ ଏଠି ମଧ୍ୟ ଜୁଟିଗଲେ ସେମାନେ, ତାଙ୍କର ଉପକାର ଲୋଡୁଥିବା ଦୁଃଖୀମାନେ ।

ଏହି ସମୟରେ ଆସି ପହୁଞ୍ଚିଲା ତାଙ୍କ ପାଖରେ ରାଜ୍ୟର ରାଜନୀତିକୁ ନେଇ ନାନା ବିସ୍ମୟକର ସମାଚାର ତଥା ସୁଲେଖା ସମ୍ବାଦ । ଆନନ୍ଦବର୍ଦ୍ଧନ ସୁଲେଖା ସମ୍ବାଦ ଏବଂ ସେ ଭାବି ହେଉଛନ୍ତି ଏଇ କେତେଦିନ ହେଲା ଯେ ଏଇ ନୂଆ ମନ୍ତ୍ରୀମହୋଦୟାଙ୍କ ପାଖକୁ ଗୋଟିଏ ଅଭିନନ୍ଦନ ପତ୍ର ପଠାଇବା ଉଚିତ । ଏକ ବ୍ୟକ୍ତିଗତ ପତ୍ର, ଦିହିଁଙ୍କ ଅତୀତ ଜୀବନକୁ ସମ୍ମାନ ଦେଲାପରି । ମଧ୍ୟ ଅମରର ଦୁର୍ଭାଗ୍ୟକୁ ଗୋଟାଏ କୂଳକିନାରା ମିଳିଯିବ ପରା !

ସେଇଠୁଁ ଆଜିର ଏଇ ଦୃଶ୍ୟାବଲୋକନ, ଲଞ୍ଚକୁ ବାହାରିବା ବେଳେ । ଏକ ଅପରୂପ ଦୃଶ୍ୟ, ଯାହାକୁ ଦେଖି 'ହାଓ କିଉଟ୍ !' ବୋଲି ପଦୁଟିଏ ବାହାରି ପଡ଼ିଲା ତାଙ୍କ ମୁହଁରୁ ଏବଂ ବୋଧହୁଏ ସଶବ୍ଦରେ ଉଚ୍ଚାରିତ ହେଲା, ପାଖ ଦେଇ ଆସୁଥିବା ଡଃ ସେନ୍‌ଙ୍କୁ ସେଇ ଆମୋଦର ସାଥୀ କରିବା ଲାଗି ।

ବୁଢ଼ାକବି ଜଗଦ୍‌କୃଷ୍ଣ ପଣ୍ଡାଙ୍କୁ ସେ ଅବଶ୍ୟ ଚିହ୍ନନ୍ତି । ସେ ଯୁଗର ସୁବିଦିତ ଗୀତିକବିଟିଏ । କିନ୍ତୁ ଯେଉଁ ଭଦ୍ରମହିଳାଙ୍କ ହାତକୁ ସେ ଆଉଁଶୁଥିଲେ, ସେ ଜଣକ କିଏ ? କବି ପରା ବିପତ୍ନୀକ ? ପ୍ରାୟ ବର୍ଷେ ହେଲା ତାଙ୍କ ସ୍ତ୍ରୀଙ୍କୁ ହରାଇଛନ୍ତି, ମୁଁ ଯାହା ପଢ଼ିଛି ଏବେ, କବିଙ୍କ ବିଷୟରେ ବାହାରିବା କେଉଁ ସମ୍ବାଦରେ । ତା'ହେଲେ ଇଏ କ'ଣ ତାଙ୍କର କୋଉ କାବ୍ୟନାୟିକା ? ଯାହାକୁ ସେ ଆକସ୍ମିକ ଭାବରେ ପାଇ ଆତ୍ମହରା ହୋଇ ପଡ଼ିଛନ୍ତି ? ତେଣୁ ଦିହିଁଙ୍କ ଶୁକ୍ଳକେଶକୁ ନେଇ କେଉଁ ସଙ୍କୋଚ ତଥା ଖୋଲାମୁକୁଳା ଝରକାକବାଟକୁ ପରୁଆ ନ କରି, ସେ ତା' ହାତକୁ ବସି ଆଉଁଶୁଛନ୍ତି ଏମିତି ? ସତେକି ଏଭଳି ଏକ ମହାର୍ଘ ଅନୁଭବକୁ ସେ ହରାଇବାକୁ ଚାହାଁନ୍ତି ନାହିଁ, ମୁହୂର୍ତ୍ତକ ପାଇଁ !

ଡଃ ସେନ୍‌ଙ୍କ ଉଦାସୀନତା (ସେଇଟା ତ ସେମିତିକା ଲୋକ !) ସତ୍ତ୍ୱେ ଏକ ନୂତନ ଭାବାବେଗର ସୃଷ୍ଟି ହେଲା ବଳରାମବାବୁଙ୍କ ମନରେ । ଖାଲି କବିମାନେ କ'ଣ ଏମିତି ଅନୁଭବ୍ କରିପାରନ୍ତି ? ଆଉ ଆମେମାନେ ସେଥିର ଯୋଗ୍ୟ ନୋହୁଁ ?

ସେଇଦିନ ବୋଧହୁଏ ସେ ଅଭିନନ୍ଦନର ପତ୍ରଟିଏ ଲେଖିଥାଆନ୍ତେ ସୁଲେଖାଙ୍କ ପାଖକୁ, ପ୍ରସ୍ତାବଟାକୁ ଏତେଦିନଯାଏଁ ପକେଇ ରଖିଲା ପରେ । କିନ୍ତୁ ସେଥିର ଭାଷା ଏତେ ଦୁଃସାହସୀ ହୋଇ ନ ଥାଆନ୍ତା ବୋଲି ମନେହୁଏ, ଏଇ ଦୃଶ୍ୟଟିକୁ ଦେଖି ନ ଥିଲେ । ଏକ ନବଜାଗ୍ରତ ଭାବାବେଗରୁ ଉଦ୍‌ଭୂତ ହୋଇଥିବା ଦୁଃସାହସ । କହିଲେ, କୋଉ ପ୍ରେମପ୍ରେମ ଅବଶ୍ୟ ଅତ୍ୟାଚାର କରୁ ନାହିଁ ମୋ ଉପରେ, ଏଇକ୍ଷଣି, କିନ୍ତୁ ସେଇ ବିଗତଅତୀତକୁ ସ୍ମରଣ କଲେ, ମାନେ ଯଥାର୍ଥରେ, ସେବେଳର ସରାଗକୁ ନେଇ ସ୍ମରଣ କଲେ କ୍ଷତି କ'ଣ ଅଛି ? ବରଂ ମଜା ହେବ । ରାଗିଲେ ରାଗୁ, କ'ଣଟା ସେ କରିବ ମୋର ? ମାନହାନି ମକଦ୍ଦମା କରିବ ନା ଫାଶୀକାଠରେ ଝୁଲେଇବ ମୋତେ ?

ଚିଠିରେ ସେ ଯାହା ଲେଖିବାର ଲେଖିଥିଲେ, ଅମରକୁ ନେଇ ତାଙ୍କର ଏକାନ୍ତ ଅନୁରୋଧ ସମେତ । କିନ୍ତୁ ସେ ଯେଉଁଭାବରେ ସମ୍ବୋଧନ କରିଥିଲେ ସୁଲେଖାଙ୍କୁ, ଚିଠିକୁ ଆରମ୍ଭ କଲାବେଳେ, ତାହାହିଁ ବିଶେଷ ଉଲ୍ଲେଖଯୋଗ୍ୟ । ଲେଖିଥିଲେ - ''ମାଇଁ ଡିଅର୍ ସୁଲୁ....'' । ସେଇ ପହିଲି ପ୍ରେମନିବେଦନର ଭାଷା, ଉଚ୍ଛନ୍ନ ପ୍ରେମର ସେଇ ନୂଆ ପଦୁଟିଏ । ଯାହା ନବତରୁଣୀ ସୁଲେଖାକୁ ଚମକେଇ ଦେଇଥିଲା, ଆଜିକୁ ପ୍ରାୟ ପଞ୍ଚାବନ ବର୍ଷ ତଳେ ।

## ତୃତୀୟ ଦର୍ଶକ : ଗଜେନ୍ଦ୍ର ଦାସ

ଗଜେନ୍ଦ୍ରବାବୁଙ୍କୁ ବିରକ୍ତ ହେବାକୁ ପଡ଼ିଲା ଯେ 'ଏମାନେ' ଶୁଣୁ ନାହାନ୍ତି ତାଙ୍କ କଥା । ମାନେ ଶୁଣିଲା ପରି ଶୁଣୁ ନାହାନ୍ତି । ବୁଝୁ ନାହାନ୍ତି ଦୃଶ୍ୟଟାର ତାତ୍ପର୍ଯ୍ୟ । ଡଃ ସେନ୍‌ର ଲମ୍ବା ମୁହଁ ତ ଆହୁରି ଲମ୍ବା ଦେଖାଯାଉଛି, ଓଠ ଦି'ଟା ଆହୁରି ଚିପି ହୋଇଯାଇଛି । ସତେକି ସିଏ ଗୋଟାଏ ଗନ୍ଧିଆ ଦୃଶ୍ୟ, ତେଣୁ ମହାମହିମ 'ସାର୍' ସେ ବିଷୟରେ କିଛି ଶୁଣିବାକୁ ଚାହାଁନ୍ତି ନାହିଁ । ସେ ଏସବୁଥିର ଅନେକ ଉର୍ଦ୍ଧ୍ୱରେ । ହଁ, ତମେ ସେମିତିକା ଲୋକ ବୋଲି ମୁଁ ଜାଣିଛି । ଅନେକ କିଛି ଶୁଣିଛି ତମ ବଡ଼େଇ ବିଷୟରେ, ଯାହା ଯାତ୍ରାସୁଆଙ୍ଗର ରାଜାମାନଙ୍କୁ ବି ଟପିଯିବ । କିନ୍ତୁ ଏଇ ଖଦଡ଼ିଆ ଆଉ ଖୁସିବାସିଆ ନେତାବୁଢ଼ାର କ'ଣ ହୋଇଛି ? 'ଦେଖିଲେ ସାର୍ ?' ବୋଲି ମୁଁ ତାକୁ ବି' କହିଛି, ମାନେ କହିବାକୁ ଆରମ୍ଭ କରିଛି । ଯେ ଦୃଶ୍ୟଟାର ଅର୍ଥ ଏଇଆ, ଯାହା ତମେମାନେ ଜାଣି ନ ଥିବ । କାରଣ ଅନ୍ତତଃ ନାରୀମୂର୍ତ୍ତିଟିକୁ ଚିହ୍ନି ନ ଥିବ । କିନ୍ତୁ ସିଏ ବି କାହିଁକି ଶୁଣିବ ମୋ କଥା ? ଖାଲି ମନକୁ ମନ ହସୁଛି ଆଉ ମୁଣ୍ଡ ଟୁଙ୍ଗାରୁଛି । ସତେକି ତାକୁ ଏମିତି ମଜା ଲାଗୁଛି ଦୃଶ୍ୟଟାକୁ ଦେଖି ଯେ କୌଣସି ଟୀକାଟୀପ୍ପଣୀ ଶୁଣିବା ଦରକାର ନାହିଁ । ତଥାପି ମୁଁ ତାକୁ କହିଥାଆନ୍ତି କିଛି । ଆରଲୋକଟା ପରି ନୁହେଁ, ଇଏ ଶୁଣିଥାଆନ୍ତା ମୋ କଥା । କିନ୍ତୁ ମୁଁ ତା' ଚାଲି ସାଙ୍ଗରେ ତାଳ ଦେଇପାରିଲି ନାହିଁ । ଆର ଲୋକଟା ତ ଚାଲେ ଲମ୍ବା ଲମ୍ବା ପାହୁଣ୍ଡ ପକେଇ । କିନ୍ତୁ ଏଇ ଖଦଡ଼ିଆ, ସେ କୁଆଡ଼େ କଲେଜ୍‌ରେ ପାଠ ପଢ଼ଉଥିଲା, ଏମିତି ଖୁସୁରୁ ଖୁସୁରୁ ହୋଇ ପଳେଇ ଯାଏ ଆଗକୁ, ଯେ ତାକୁ ଧରି ହେବ ନାହିଁ ସହଜେ । ଯାନେ ଦୋ ! ଗଜେନ୍ଦ୍ର ଦାସର ଗରଜ ପଡ଼ିଛି ଗୋଡ଼େଇବ ତମ ପଛରେ !

ପ୍ରିୟ ନିର୍ବୋଧ ଭାଇମାନେ, ତମେ ବୁଝୁ ନାହଁ ଦୃଶ୍ୟଟାର ତାତ୍ପର୍ଯ୍ୟ କଅଣ । କେତେ ମାରାତ୍ମକ । ବୁଢ଼ାବୁଢ଼ୀ ଦି'ଟା ଏଭଳି ଗୋଟାଏ ଦୃଶ୍ୟ ଦେଖାଉଛନ୍ତି ଦିନ ଦି'ପହରେ, ଦୁନିଆ ଆଗରେ । ତେଣୁ ଏଇ ଅପଦୃଶ୍ୟକୁ ଦେଖିବାର ନୁହେଁ ବୋଲି କହି ସେଠୁଁ ପଳେଇଯିବା ନିରର୍ଥକ କିମ୍ବା ଇଏ ଗୋଟାଏ ମଜାକଥା ନୁହେଁ ଯେ ଏଇ ବୟସରେ ଏଭଳି ପେରେମ ହେଉଛନ୍ତି ଦି'ଜଣଯାକ । ଦୃଶ୍ୟଟା କେବଳ ଅପଦୃଶ୍ୟ ନୁହେଁ ଏବଂ ମଉଜିଆ ନୁହେଁ, ମୋଟେ ନୁହେଁ । ମୁଁ ସେ ବିଷୟରେ କିଛି କହିଥାଆନ୍ତି ତମକୁ, ଯେଉଁଥିରେ ତମେସବୁ ଚମକି ଉଠିଥାଆନ୍ତ । ଯେ ଏମିତି ବି ହୋଇପାରେ ଉଚ୍ଚାଙ୍ଗ ବଡ଼ଲୋକ, ତଥାକଥିତ 'ଏଲିଟ୍'ମାନଙ୍କ ଦୁନିଆରେ !

ଅବଶ୍ୟ ତମେମାନେ ମଧ୍ୟ ସେଇ ଶ୍ରେଣୀର ଲୋକ । ତେବେ ମନେହୁଏ ଯେ ତମମାନଙ୍କର ବୁଦ୍ଧିବିବେକ ଅଛି, ତମେ ବୁଝିଥାଆନ୍ତ ଏବଂ ମୋ ଛଡ଼ା କେହି ତା'ର ଠିକଣା ଅର୍ଥ ବୁଝେଇ ପାରି ନ ଥାଆନ୍ତେ ତମକୁ । କାରଣ ତମେ ସିନା ବୁଢ଼ା କବିଙ୍କୁ

ଜାଣିଥିବ, ତମେ କୋଉଠୁ ଜାଣିବ ସେ ନିର୍ଲଜ୍ଜୀ ସ୍ତ୍ରୀଲୋକଟା କିଏ ? ମୁଇଁ ଜାଣିଛି । ଖାଲି ତା'କୁ ନୁହେଁ ତା' ଘଇତାକୁ, ତାଙ୍କ ସାରା ପରିବାରକୁ । କହିବି ସେ କିଏ ? ସେ ହେଉଛି ସ୍ୱର୍ଗୀୟ ପିଣ୍ଟୁ ଓରଫ୍ ପରମାନନ୍ଦ ମହାପାତ୍ରର ସ୍ତ୍ରୀ । ମଞ୍ଜୁ ମହାପାତ୍ର । ଏକାଧାରରେ ଶିଳ୍ପପତି ଏବଂ କଳା ଓ ସଂସ୍କୃତିର ପୃଷ୍ଠପୋଷକ ବୋଲାଉଥିବା ପରମାନନ୍ଦ ମହାପାତ୍ରର ବାଂଝ୍ ବିଧବା । ଏଇଥିରୁ ବୁଝୁଛନ୍ତି ତ କେତେ ଜଘନ୍ୟ ବୋଲି କହିବ ଏଇ ହାତ ଆଉଁଶା ବ୍ୟାପାରଟାକୁ ? ମନେରଖନ୍ତୁ ଯେ ପିଣ୍ଟୁ ଏଇ କାଲି ସକାଳେ ସ୍ୱର୍ଗକୁ ଯାଇଛି, ଏଇ ଦି'ତିନି ମାସ ତଳେ । ଆଉ ସେ ଦେଖୁଥିବ ଏଇ ଦୃଶ୍ୟ, କିଭଳି ଅପମାନ ଦିଆହେଉଛି ତା'ର ସ୍ମୃତିକୁ । ଅବଶ୍ୟ ସିଏ ଗୋଟାଏ ଫମ୍ପା ସ୍ମୃତି ବୋଲି ମୁଁ କହିବି । କାରଣ ତୁ ପିଲାଟିଏ ବି ଆଣିଦେଇ ପାରି ନାହୁଁ ତୋ ସ୍ତ୍ରୀର କୋଳକୁ । ଆଉ କେତେ ଯେ ଆଉଟ୍‌ମିଲ୍ ପକେଇଥିବୁ ତୋର ବଡ଼ ବଡ଼ କଣ୍ଟ୍ରାକ୍ଟ ଓ ସୁଖ୍ୟାତି ହାସଲ କରିବାପାଇଁ ତା' କହିହେବ ନାହିଁ । ସେ ହିସାବରେ ରାଣ୍ଡୀକୁ ଦୋଷ ଦେଇ ହେବ ନାହିଁ । ହେଲେ ଏଇଆକୁ କ'ଣ ମରାଲ୍ସ ବୋଲି କହିବ ? ତୋର, ଆଉ ତମ ସମାଜର ? ଛିଃ !

ପଚାରୁଛନ୍ତି ମୁଁ କେମିତି ଏବଂ କେଉଁଭାବରେ ଜାଣିଲି ପିଣ୍ଟୁ ଆଉ ମଞ୍ଜୁକୁ ? ଅତି ସହଜ ଉତ୍ତର । ମୁଁ ମଧ ଜଣେ କଣ୍ଟ୍ରାକ୍ଟର ଏବଂ ମୋତେ ବି ବଡ଼ଲୋକ ବୋଲି କୁହାଯାଇପାରେ ମୋର ସୁରକ୍ଷିତ ଧନସମ୍ପତ୍ତି ଓ ବ୍ୟାଙ୍କ୍ ବାଲାନ୍ସ୍‌କୁ ନେଇ । କିନ୍ତୁ ପିଣ୍ଟୁ ଜୀବନଟା ଯାକ ମୋ ଆଖିରେ ଆଙ୍ଗୁଳି ଗେଞ୍ଜି କହି ଆସିଛି, ମୁଁ ଛୋଟ, ଆଉ ସେ ବଡ଼ । ସେ ଯେଉଁ ଭୂସ୍ୱର୍ଗକୁ ଉଠିଛି, ତା'ର କଣ୍ଟ୍ରାକ୍ଟ ଓ କଲ୍‌ଚର୍‌କୁ ନେଇ, ମୁଁ ତା'ର ପାଖ ମାଡ଼ିପାରିବି ନାହିଁ । କଲ୍‌ଚର୍ ତ ମୋ ରକ୍ତରେ ନାହିଁ । ଆଉ କଣ୍ଟ୍ରାକ୍ଟ ? ହୁଁଃ ! ସେ ଯେତେ ଉପରକୁ ଉଠିପାରିବ, ତା' ଭେଟି ଦେଇ ଆସିବା ଲାଗି, ଖୋଦ୍ ନମ୍ବର ଉଆନ ଅଧିକାରୀ (କିମ୍ବା ତାଙ୍କର ସ୍ତ୍ରୀ)ଙ୍କୁ, ମୋର ପହୁଞ୍ଚ କାହିଁ ସେଠିକି ? ମୋର ଏଇ ଅକ୍ଷମତାଟିକ ସେ ଜଣାଇ ଦିଏ ମୋତେ, ସୁଯୋଗ ପାଇଲେ । ପଦୁଟିଏ କଥା କହିବା ଦରକାର ନାହିଁ । ଖାଲି ତା'ର ଭୂରୁ ଟେକି ହୋଇଯାଏ ସାମାନ୍ୟରେ, ଆଉ ଅଧା ହସଟିଏ ଫୁଟିଉଠେ ତା'ର ମାଇଚିଆ ନାଲିଚିଆ ଓଠରେ, ସେ ଯେତେବେଳେ ଦେଖେ ମୋତେ କେଉଁ ଉପରମହଲର ପାର୍ଟିରେ । ମନେହୁଏ କହୁଛି - ଆରେ ଗଜିଆ, ତୁ ବି ଏଠି ! ଏ ଯାଏଁ ଆସି ପହୁଞ୍ଚିଗଲୁଣି ? ଭଲ, ଭଲ...

ସେଇ ଭୂରୁଟେକା ଆଉ ମୁଚୁକୁନ୍ଦ ହସ ଦେଇ ସେ ମୋତେ ଛିଗୁଲେଇ ଆସିଛି ମୋ ପିଲାଟି ଦିନୁ । ସେବେଠୁଁ, ଯେତେବେଳେ ମୁଁ ଆଉ ତା' ସାନଭାଇ ଚିନ୍ତୁ, ଓରଫ୍ ଚିନ୍ମୟାନନ୍ଦ ଠିଆ ହୋଇଥିଲୁ ତା'ରି ରିଟାୟାର୍ଡ୍ ଜଜ୍‌ସାହେବ ବାପା ସଦାନନ୍ଦ ମହାପାତ୍ରଙ୍କ ସାମ୍‌ନାରେ, ତାଙ୍କ ଲେକ୍‌ଚର୍ ଶୁଣିବା ଲାଗି । କାରଣ କାଲି ସକାଳେ ଆମ ଦି' ଜଣଙ୍କର ପ୍ରଥମଥର ପାଇଁ ସହରର ସରକାରୀ ହାଇସ୍କୁଲ୍‌ରେ ନାଆଁ ଲେଖାଇବାର ଅଛି । ଏକା

କ୍ଲାସ୍‌ରେ, ପଞ୍ଚମ ଶ୍ରେଣୀରେ । ଯାହା ଠିକଣା କରାଯାଇଛି ଆମ ବାପାମାନଙ୍କ ଦ୍ୱାରା, ଆମର ଘରପଢ଼ା ବିଦ୍ୟାବୁଦ୍ଧି ଅନୁଯାୟୀ ଏବଂ ଇଏ ହେଉଛି ଆମକୁ ସେଥିପାଇଁ ପ୍ରସ୍ତୁତ କରାଇବାର ଲେକ୍‌ଚର୍ । ପିଣ୍ଟୁ-ଚିନ୍ତୁଙ୍କର ବାପା ବସିଛନ୍ତି ଆରାମ ଚଉକିରେ, ତାଙ୍କ ଦାଣ୍ଡ ପିଣ୍ଡାରେ । ଆଉ ମୋ ବାପା ଠିଆ ହୋଇଛନ୍ତି ପିଣ୍ଡା ତଳେ । କୃତଜ୍ଞତାର ଭଙ୍ଗୀରେ, ଦାନ୍ତ ଗିଜିଡ଼ି । ତାଙ୍କ ନାଆଁ ମଧୁ ଦାସ, ଜଜ୍‌ସାହେବଙ୍କ ମାଳୀ ଏବଂ ସେଇ ଲେକ୍‌ଚର୍‌ର ସାରକଥା ଦି'ପଦ ଭୁଲିବାର ନୁହେଁ । କହୁଛନ୍ତି -

''ତମେ ଦି'ଜଣ ସ୍କୁଲ୍‌କୁ ଯିବ କାଲି ସକାଳେ । ଏକା ସ୍କୁଲ୍‌ରେ ଏକାପାଠ ପଢ଼ିବ । ତମେ ଭିନ୍ନ ଭିନ୍ନ ଘରର ପିଲା, ଚାଲିଚଳଣ ଭିନ୍ନ, କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ । ସ୍କୁଲ ପାଠ ନେଇ ସମସ୍ତେ ସମାନ ଏବଂ ତମ ପାଠପଢ଼ା ଉପରେ ନିର୍ଭର କରେ କିଏ କେତେ ଉପରକୁ ଉଠିବ - ବୁଝିଲ ? ଆଉ ମନେରଖ ଯେ ପାଠପଢ଼ା ଛଡ଼ା ଆଉ ଗୋଟାଏ ଜିନିଷ ନିହାତି ଦରକାର, ଯାହାକୁ ନେଇ ତମେ ନିଜକୁ ସାବାସ୍ ଦେଇ ପାରିବ ଭବିଷ୍ୟତରେ । ଜଣେ ମଣିଷ ହିସାବରେ । ଆଉ ସେଇ ଜିନିଷଟା ହେଉଛି ଚରିତ୍ର । କ୍ୟାରାକ୍ଟର୍ । ତମେ ଏଇକ୍ଷଣି ପିଲା ଅଛ, ବୁଝିପାରିବନି ତା'ର ସମ୍ପୂର୍ଣ୍ଣ ଅର୍ଥ । କିନ୍ତୁ ବଡ଼ ହେଲେ ବୁଝିବ । ସେଇଠୁଁ ଟାଣରେ 'କ୍ୟାରାକ୍ଟର୍ !' 'କ୍ୟାରାକ୍ଟର୍ !' କହି ଯୋଡ଼ାଏ ମୁଥ ମାରିଲେ ଆରାମଚଉକିର ହାତ ଉପରେ ଏବଂ ଆମକୁ 'ଯା', ଖେଳିବ ଯା' ବୋଲି କହି ସାରିଦେଲେ ତାଙ୍କର ଲେକ୍‌ଚର୍ ।

ବାପାଙ୍କ ଦାନ୍ତଗିଜିଡ଼ା ହସ ଆହୁରି କୃତଜ୍ଞ ଏବଂ ଅନୁଗତ ଦିଶୁଥାଏ । ହେଲେ ବାପାଙ୍କ ଆଡ଼କୁ ଅନେଇବା ପୂର୍ବରୁ ମୋ ଆଖିରେ ପଡ଼ିଥିଲା ଆଉ ଜଣକ ମୁହଁର ହସ । ଭୃରୁଟେକା ଅଧାହସ । ଆରାମଚଉକି ପଛରେ ଟିକିଏ ଦୂରରେ ଠିଆ ହୋଇଥିବା ଆଉ ଜଣେ ଶ୍ରୋତା, ଚିନ୍ତୁର ବଡ଼ଭାଇ ପିଣ୍ଟୁର ହସ । ସେତେବେଳେ ତା'ର ଅର୍ଥ ବୁଝିପାରି ନ ଥିଲି । କିନ୍ତୁ ପରେ ବୁଝିଲି, ମୋ ଜୀବନଟା ଯାକ, ସେଇ ହସର ବିଭିନ୍ନ ଉଦାର ଏବଂ ସଦୟ ସଂସ୍କରଣର ମାଧ୍ୟମରେ, ଯେ ଏଇ ହେଉଛି ତା' ଅର୍ଥ - ଆମ ଜଜ୍‌ସାହେବ ବାପା ତ ଏମିତିକା ଲେକ୍‌ଚର୍ ଦେବେ । ହେଲେ ଗଜିଆ, ତୁ ଜାଣିଥିବୁ ତୋର ସ୍ଥାନ କେଉଁଠି । ଯେ ତୁ ଯେଉଁଯାଏଁ ଉଠିପାରିବୁ । ତୁ କେବେହେଲେ ଆମର ସମସ୍କନ୍ଧ ହୋଇପାରିବୁ ନାହିଁ, ବୁଝିଲୁ ? ଏତିକି ମନେ ରଖିଥା ।

କାହିଁକିନା ତୁ ଆମ ମଧୁମାଳୀର ପୁଅ । କୋଉ ଖାନ୍‌ଦାନି, କି କଲ୍‌ଚର୍ ଅଛି ତୋ ରକ୍ତରେ, ଯେ ତୁ ସାହସ କରିବୁ ପାଖ ଚଉକିରେ ବସିବା ଲାଗି ? ଆଉ ସେତିକି ବୁଝିବା, ଏଇ ସାରସତ୍ତ୍ୱଟିକୁ ବୁଝିପାରିବା ହିଁ ତୋ କ୍ୟାରାକ୍ଟର୍‌ର ଶେଷକଥା ହେବା ଉଚିତ । ଆଇ ଆମ୍ ସରି ଗଜିଆ, ବଟ୍ ଦିସ୍ ଇଜ୍ ହାଓ ଇଟ୍ ଇଜ୍ !

ହଁ, ଏଇ ବାସ୍ତବ ସତଟିକ ସେ ମୋତେ ବୁଝେଇବାରେ ଲାଗିଛି ଯେ ଜୀବନଟା ଯାକ ।

କିନ୍ତୁ ମୁଁ ବୁଝିବାକୁ ନାରାଜ । ଗଜେନ୍ଦ୍ର ଦାସକୁ ଜଣା କୋଉ ଧାତୁରେ ଗଢ଼ା ତମ କଲ୍‌ଚର୍, ତମ ଖାନ୍‌ଦାନି, ତମ ବଡ଼ପଣ । ସବୁ ଫମ୍ପା, ଆଉ ଫିସାଦିଆ । ଆଉ ଆଜି ଯାହା ଦେଖିଲୁ, 'ଯେଉଁ ଆଉଁଶିହେବାର ଦୃଶ୍ୟ ଦେଖାଇଲା ତୋତେ ତୋ ମାଇପ, ସେଥିରେ କିଭଳି କଲ୍‌ଚର୍ ଅଛି, ଅବା କିଭଳି ଖାନ୍‌ଦାନି, ତା' କ'ଣ ତୁ ବୁଝୁ ନ ଥିବୁ ସେପୁରରେ ଥାଇ ?

ବିଦ୍ରୂପାତ୍ମକ ହସଟିଏ ଲାଖି ରହିଥିଲା ଗଜେନ୍ଦ୍ରବାବୁଙ୍କ ଓଠରେ ସେ ଡାଇନିଙ୍ଗ୍ ହଲ୍‌ରେ ପହୁଞ୍ଚିବା ଯାଏଁ ।

ହେଲେ ସେଇ ସ୍ମିତହାସରୁ ହଠାତ୍ ଛିଟିକି ପଡ଼ିଥିଲା ମଝିରେ ହାବୁକାଏ ଖୋଲା ହସ, ହଲ୍‌ରେ ପହୁଞ୍ଚିଲା ପୂର୍ବରୁ । ପାଖ ଦେଇ ଯାତାୟାତ କରୁଥିବା କେତେଜଣ ଅନ୍ତେବାସୀ ଏବଂ କର୍ମଚାରୀମାନଙ୍କୁ ବିସ୍ମିତ କରିଦେଇ । କାରଣ ତାଙ୍କର ମନେ ପଡ଼ିଲା ଗୋଟାଏ ମଜାକଥା ଏବଂ ସେଇ ରସବୋଧକୁ ସେ ପ୍ରକାଶ ନ କରି ରହିପାରିଲେ ନାହିଁ । ଆରେ, ଏଇ ବୁଢ଼ାକବିଙ୍କୁ ପରା ଗୋଟାଏ ପୁରସ୍କାର ମିଳିଥିଲା ନା କ'ଣ, ପିଣ୍ଟୁର 'ଉତ୍କଳ କଳାକୁଞ୍ଜ' ତରଫରୁ ? ସେଥିର ଧନ୍ୟବାଦ ଜ୍ଞାପନ ସରି ନାହିଁ ବୋଧହୁଏ । ସେହେତୁ ଏଇ ହାତ ଆଉଁଶା, ଏଇ ପେରେମ, ପୁରସ୍କାରଦାତା ପିଣ୍ଟୁ ମହାପାତ୍ରର ମାଇପ ପାଇଁ ! ରକ୍ଷାକର !

ଡାଇନିଙ୍ଗ୍ ହଲ୍‌ର ଯେଉଁ ଟେବୁଲ୍ ପାଖରେ ବସି ପଡ଼ିଲେ ଗଜେନ୍ଦ୍ରବାବୁ, ତା' ଆରପାଖରେ ବସିଥିବା ଭଦ୍ରଲୋକଙ୍କୁ ସେ ଚିହ୍ନନ୍ତି ଅଳ୍ପବହୁତ । ତାଙ୍କ ନାଆଁ ରଜତ ରଥ ଏବଂ ସେ କୋଉ କମ୍ପାନୀରେ କାମ କରୁଥିଲେ । ତେଣୁ ସେ ଭାବିଲେ ଯେ ଭଦ୍ରଲୋକ ନିଶ୍ଚୟ ଜାଣିଥିବେ ସ୍ୱନାମଧନ୍ୟ ପିଣ୍ଟୁ ମହାପାତ୍ରଙ୍କୁ ଏବଂ ବସୁ ନ ବସୁଣୁ ତାଙ୍କୁ ଆକ୍ରମଣ କଲେ ହସରେ ଫାଟି ପଡୁଥିବା ମୁହଁରେ -

''ଜାଣିଛନ୍ତି ରଜତବାବୁ, ଆମେ କେତେଜଣ ଯାହା ଦେଖିଲୁ ଏଇକ୍ଷଣି, ୨୦୪ ନମ୍ବର ରୁମ୍‌ରେ, ଏଠିକି ଆସୁ ଆସୁ ?''

''କ'ଣ ଦେଖିଲେ ?'' ବିସ୍ଫାରିତ ଚକ୍ଷୁ ।

''ରୁହନ୍ତୁ । କହିବି ସେକଥା ପରେ । ଆପଣ ଜାଣନ୍ତି, ଆଇ ମିନ୍ ଜାଣିଥିଲେ, ପରମାନନ୍ଦ ଓରଫ୍ ପିଣ୍ଟୁ ମହାପାତ୍ରଙ୍କୁ ? ଯେ -''

''ଓ, ସିଓର୍ !'' ରଜତବାବୁ କହିଉଠିଲେ, ପିଣ୍ଟୁ ମହାପାତ୍ରଙ୍କ ପରିଚୟପତ୍ର ଆରମ୍ଭ ନ ହେଉଣୁ । ''ଖାଲି, ଜାଣିଥିଲି ନୁହେଁ । ମୁଁ ତାଙ୍କରି ଗୋଟିଏ କମ୍ପାନୀ 'ମଲ୍ଲିକା ଫର୍ମାସିଉଟିକାଲ୍‌ସ'ରେ ଥିଲି ପରା ପ୍ରଥମେ ?''

(ମଲ୍ଲିକାଟି କିଏ ? ତୋର କୋଉ ଗୋପନ ପ୍ରେମିକା ?)

ମୁଁ ତାଙ୍କ କମ୍ପାନୀକୁ ଛାଡ଼ିଦେଇ ଚାଲିଯାଇ ନ ଥିଲି । ସେଇ ଥିଲା ତାଙ୍କର ପ୍ରଥମ ଉଦ୍ୟୋଗ ବିଲାତରୁ ଫେରିବା ପରେ, ଆଉ ତାଙ୍କର ତର ସହୁ ନ ଥିଲା କଳକାରଖାନା ଖୁନ୍ଦି ଦେବା ଲାଗି ଆମ ରାଜ୍ୟରେ । କିନ୍ତୁ ଦୁଃଖର ବିଷୟ ସେ ପାରିଉଠିଲେ ନାହିଁ, ଯେକୌଣସି କାରଣରୁ । କମ୍ପାନୀ ଫେଲ୍ ମାରିଲା ।

''କିନ୍ତୁ ଦେଖନ୍ତୁ କେମିତିକା ଭଦ୍ରଲୋକ ସେ । ଜଣ ଜଣ କରି ଗଲେ ଆମ ପ୍ରତ୍ୟେକଙ୍କ ଡେସ୍କ୍ ପାଖକୁ ଏବଂ କହୁଛନ୍ତି କ୍ଷମା ମାଗିଲା ପରି, ମୋଟା ଚେକ୍‌ଟିଏ ଗୁଞ୍ଜି ଦେଇ ଆମ ହାତରେ - ''ଆଇ ଆମ୍ ସରି, ଏହାଛଡ଼ା ଅନ୍ୟ ଗତି ନ ଥିଲା ମୋର । ମୋ ଜେଜେମା ମଲ୍ଲୀଦେଈଙ୍କ ନାଁଆରେ ବସେଇଥିଲି ଏଇ କମ୍ପାନୀ । ('ଆଚ୍ଛା ? ବୋଲି ଗଜେନ୍ଦ୍ରବାବୁଙ୍କ ପାଟିରୁ ବାହାରିଲା, କଥାଟାକୁ ବିଶ୍ୱାସ କରି ହେଉ ନାହିଁ ବୋଲି, କିନ୍ତୁ ରଜତବାବୁଙ୍କ କଥାର ସୁଅ ଅଟକି ଗଲା ନାହିଁ) ଆଉ ସେଇ ମୋତେ ଗୋଟାଏ ଶିକ୍ଷା ଦେଇଗଲେ । ମୁଁ ବୁଝିଗଲିଣି ମୋର ଭୁଲ୍ କେଉଁଠି ଥିଲା ଏବଂ ମୁଁ ପୁଣି ସେଇ ଭୁଲ୍ କରିବି ନାହିଁ ।' ସେଇଠୁଁ ହସୁଛନ୍ତି ତାଙ୍କର ସେଇ ଅମାୟିକ ହସ (ମାଇଚିଆ ନାଲିଚଆ ଓଠର ହସ ବୋଲି ଗଜେନ୍ଦ୍ରବାବୁ ଟୀପ୍‌ପଣୀ ଦେଲେ ମନେ ମନେ), ଆଉ କହିଲେ ଆମକୁ - 'ମୁଁ କିନ୍ତୁ ପ୍ରତିଶ୍ରୁତି ଦେଉଛି ତମ ସମସ୍ତଙ୍କୁ । ମୁଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରିବି ପ୍ରତ୍ୟେକଙ୍କୁ ଭଲ ଭଲ ଜାଗାରେ ରଖେଇ ଦେବା ଲାଗି ।' ଆଉ ମୋର କହିବାରେ ଦ୍ୱିଧା ନାହିଁ ଯେ ତାଙ୍କରି ଚେଷ୍ଟାରେ ମୁଁ ପଶି ଯାଇ ପାରିଲି 'ନିଉଟନ୍ କେମିକ୍ୟାଲ୍‌ସ୍' ପରି ଗୋଟାଏ ନାମ୍‌ଜାଦା ମଲ୍‌ଟି ନ୍ୟାସନାଲ୍ କମ୍ପାନୀରେ । ଏନିଓ୍ୱେ, କୁହନ୍ତୁ କ'ଣ କହିବାକୁ ଚାହୁଁଥିଲେ -''

କିନ୍ତୁ ସେତେବେଳକୁ ଗଜେନ୍ଦ୍ରବାବୁଙ୍କର ବୁଦ୍ଧି ହଜିଗଲାଣି ସେ କ'ଣ କହିବେ ବୋଲି । ମନେହେଲା ଯେ ଯେଉଁ ଆଖିଦେଖା ଲଜ୍ଜାଜନକ ବ୍ୟାପାର ବିଷୟରେ ସେ କିଛି କହିବାକୁ ବସିଥିଲେ, ତା'ର କୌଣସି ମୂଲ୍ୟ ନାହିଁ ଏଇ ଲୋକଟା ପାଖରେ । ସତେକି ଶିଳ୍ପପତି ତଥା ମହା ଭଦ୍ରଲୋକ ଏବଂ ପ୍ରଜାବତ୍ସଳ ପିଣ୍ଟୁ ମହାପାତ୍ର ସ୍ୱଗୁଣରେ ଗୁଣୀ । ତେଣୁ ତା'ର ମଲା ପରେ ତା' ସ୍ତ୍ରୀର ହାତକୁ କିଏ ଆଉଁଶିଲା କି ଚିମୁଟିଲା, ଏଇ କଥାଟା ଯେତେ ଆବ୍‌ସର୍ଡ୍ ହେଉ ପଛେ, ସେଥିରେ ପିଣ୍ଟୁ-ଇମେଜ୍‌ର ଯାଏ କେତେ, ଆସେ କେତେ ?

ତାହାହିଁ ହେଲା । ଘଟଣାଟାକୁ କୌଣସିମତେ ଶୁଣେଇ ସାରିଲା ପରେ ଗଜେନ୍ଦ୍ରବାବୁ ଯେତେବେଳେ ଅନେଇଲେ ରଜତବାବୁଙ୍କ ମୁହଁକୁ, ସେ ସେଥିରେ ଈପ୍‌ସିତ ପ୍ରତିକ୍ରିୟାର ଧାପେ ହେଲେ ଦେଖିପାରିଲେ ନାହିଁ । ବିସ୍ଫାରିତ ଚକ୍ଷୁ, କୁଞ୍ଚିତ କପାଳ, ଅବା ସେଇଭଳି କିଛି । ଅପରନ୍ତୁ ଗୋଟାଏ ରୁଟିନ୍ ଭାବହୀନ 'ଆଇ-ସି !' ଉଚ୍ଚାରଣ । ଅର୍ଥାତ୍ ଆପଣଙ୍କ ବକ୍ତବ୍ୟ ଶୁଣିଲି, ଧନ୍ୟବାଦ ।

ଏହା ପରେ ଗଜେନ୍ଦ୍ରବାବୁ ତାଙ୍କ ଆଖିଦେଖା ଘଟଣାକୁ 'ପ୍ରଦୋଷ ବିଳାସ'ର ଆଉ କାହାରି ଆଗରେ ପ୍ରକାଶ କରିବାକୁ ଚାହିଁ ନାହାଁନ୍ତି । ... ଦରକାର ନାହିଁ । ପିଣ୍ଟୁ-ଚରିତ୍ରର ଭେଦ ମୁଇଁ ଜାଣେ । ମୁଇଁ ବୁଝିଛି ତା'ର ସଂସ୍କୃତି-ସୁନ୍ଦର ଓ ମତଲବି ସ୍ୱଗୁଣ । କାହାକୁ କେଉଁ ଭାବରେ ଖୁସି ରଖିବା ଉଚିତ ଏବଂ କାହାକୁ ତା'ର ସ୍ୱସ୍ଥାନରେ ବସେଇ ରଖିଲେ ଭଲ । ଥାଉ । ମୁଁ ମୋର ଭଲ ଅଛି । ଆଉ ତା' ମାଇପ ଖାଉ କେତେ ହାତଆଉଁଶା ଖାଇବ ଦୁନିଆଁ ଲୋକଙ୍କ ଠାରୁ - ମୋର ଭାସି ଯାଉଛି !

ଏହି ପରିବେଶରେ ଗଜେନ୍ଦ୍ରବାବୁଙ୍କର ମନକୁ ଆସିଲା ଯେ ତାଙ୍କର ଧନ୍ୟବାଦ ଜଣାଇବା ଉଚିତ, ଅଦୃଷ୍ଟ ପ୍ରତି । କାରଣ ଏଇ ସ୍ତ୍ରୀଲୋକ ହୁଏତ ତାଙ୍କ ସ୍ତ୍ରୀ ହୋଇ ପାରିଥାଆନ୍ତା । ହଁ, ମୋ ବାହାଘର ବି ପଡ଼ିଥିଲା ଏଇ ଫୁଲେଈ ସାଙ୍ଗରେ ଏବଂ ମୋର ବି ଟିକିଏ ଇଚ୍ଛା ଥିଲା ସେ ଆଡ଼କୁ । କିନ୍ତୁ ପ୍ରସ୍ତାବଟା ଶେଷ ମୁହୂର୍ତ୍ତରେ ଭାଙ୍ଗିଗଲା । କାରଣ ହିସାବରେ କୁହାଗଲା ଯେ ଝିଅର ବୟସ ପୁଅଠାରୁ ବର୍ଷେଖଣ୍ଡେ ବେଶି, ସେଇଥିଲାଗି । କିଓ, ସେକଥା କ'ଣ ଜାଣି ନ ଥିଲ ମୂଳରୁ, ଦିହିଁଙ୍କ ଜାତକରୁ ? ଯାହାହେଉ ମଣିଷ ରକ୍ଷା ପାଇଯାଇଛି ! ନ ହେଲେ ତୁ ଭାବିପାରୁଛୁ ଗଜେନ୍ଦ୍ର, ତୋ ଆତ୍ମା କେମିତି କଷ୍ଟ ପାଉଥାଆନ୍ତା ଏଇକ୍ଷଣି, ଆଜିକାର ଏଇ ଦୃଶ୍ୟଟାକୁ ଦେଖି, ଯଦି ତୁ ଚାଲିଯାଇ ଥାଆନ୍ତୁ ତା' ଆଗରୁ ?

ପରେ ମୁଁ ଜାଣିଲି ପ୍ରସ୍ତାବଟା କାହିଁକି ଭାଙ୍ଗିଗଲା । କାହିଁକିନା ପିଣ୍ଟୁ ମଧ୍ୟ ଜୁଟିଗଲା ସେଠି, ଅନ୍ୟତମ ପ୍ରାର୍ଥୀ ହିସାବରେ । ଆଉ ମଞ୍ଜୁର ବାପା ଜଗନ୍ନାଥବାବୁ ସହଜେ ତାଙ୍କ ଝିଅକୁ ଗୋଟାଏ 'ବଡ଼' ଘରେ ବାହା ଦେବାର ସୁଯୋଗକୁ ହାତଛଡ଼ା କରିବାକୁ ଚାହିଁଲେ ନାହିଁ । ବେଶ୍ । ମୁଁ ବୁଝିପାରିଥାଆନ୍ତି ସେକଥା । ମୁଁ କୋଉ ଲଭ୍ କରୁ ନ ଥିଲି ସେଇ ଫୁଲେଇ ମଞ୍ଜୁ ମହାନ୍ତିକୁ । ଖାଲି କିଛି ଶୁଣିଥିଲି ତା' ବିଷୟରେ । ଶ୍ୟାମଳୀ, ହେଲେ ଦେଖିବାକୁ ଭଲ । ଭଲ ପଢ଼େ, ସ୍କୁଲ୍‌ଡ୍ରାମାରେ ପାର୍ଟ୍ ନିଏ, ଆଉ କବିତା ଫବିତା ବି କ'ଣ ଲେଖିଛି ତାଙ୍କ ସ୍କୁଲମ୍ୟାଗାଜିନ୍ ପାଇଁ । ସେଇଲାଗି ମନଟା ଟିକିଏ ଢଳି ଯାଇଥିଲା ତା' ଆଡ଼କୁ । ନ ହେଲା ନାହିଁ । ତା' ଠାରୁ ଢେର ଭଲ ପାତ୍ରୀ ମିଳିଯିବେ ମୋତେ । କିନ୍ତୁ ମୋ ରକ୍ତ ତାତି ଉଠିଲା ଯେତେବେଳେ ମୁଁ ଆଉ ଗୋଟାଏ କଥା ଶୁଣିଲି ମୋ ସାଙ୍ଗ ଗୋଲୋକଠାରୁ, ଯେ ଏକପ୍ରକାର ମଧ୍ୟସ୍ଥ ହୋଇଥିଲା ଆମ ଦି'ଘର ଭିତରେ । ଯେ ଗୋଟାଏ ବିଶେଷ କାରଣ ଯୋଗୁଁ ଜଗନ୍ନାଥ ମହାନ୍ତି ପ୍ରସ୍ତାବଟାକୁ ଉଠାଇ ନେଲେ ଆମ ଘରୁ । କ'ଣ ନା ଆମେ କେବଳ ଗରିବ ନୋହୁଁ, ଆମେ ହେଉଛୁ ଛୋଟ ଜାତି । କ'ଣ ହେଲା ? ଆମେ ଛୋଟ ଜାତି ? ଆମେ ବି କ'ଣ କରଣ ନୋହୁଁ ? ''ହଁ ଯେ...'', ସେଇଠୁଁ ଗୋଲୋକ କହୁଛି ଥମଥମ ହୋଇ, ''କିନ୍ତୁ ମୁଁ ଜାଣେ ନାହିଁ କୋଉଠୁ ଏଇ ବାଜେ ଖବର ଆସି ପହୁଞ୍ଚିଛି ତାଙ୍କ ପାଖରେ, ଯେ ତମେ ସବୁ ହେଉଛ

ଗୋଲାମକରଣ ।'' ଖୋଳିତାଡ଼ି ପଚାରିଲାରୁ ମୋତେ କୁହାଗଲା ଯେ ମୋ ଜେଜେବାପା, ଯାହାଙ୍କୁ ମୁଁ ଦେଖି ନାହିଁ, ସେ ମୋ ପିଲାଦିନୁ ମରିଯାଇଛନ୍ତି ନୁହେଁ, ତାଙ୍କୁ ମୁଁ ସ୍ୱୀକାର କରିପାରିବି ନାହିଁ । ଯେହେତୁ ମୋ ଧାନକୁଟୁଣୀ ଜେଜେମା କାହାରିକୁ ବାହା ହୋଇ ନ ଥିଲେ, ସେ ଥିଲେ କୋଉ ସାଆନ୍ତକରଣଙ୍କ ରକ୍ଷିତା । ଆଉ ମଧୁ ଦାସ ତାଙ୍କରି ପୁଅ ।

ମିଛ, ମିଛ, ମିଛ ! ମୋର ଠାଏକିନି ଚଟକଣିଟାଏ ମାରିବାକୁ ଇଚ୍ଛା ହେଲା ଗୋଲୋକର ଗାଲରେ । ମିଛରେ କ'ଣ କୁହନ୍ତି ଯେ ଗରିବ ମାଇପ ସମସ୍ତଙ୍କର ଶାଳୀ ? କିନ୍ତୁ ମୁଁ ନିଜକୁ ସମ୍ଭାଳି ନେଲି । ତା' ଦୋଷ ନୁହେଁ । ଏଇ ପାଠ ପଢ଼ା ହୋଇଛି ତା'କୁ, ଝିଅଘର ତରଫରୁ । ହେଲେ ତା'ର ସୃଷ୍ଟିକର୍ତ୍ତା କିଏ ? ତାକୁଇ ଛେଚି ଛତୁ କରିଦେବା କଥା ।

ପରେ ମୋର ସନ୍ଦେହ ହେଲା, କହିପାର ଅହେତୁକ ସନ୍ଦେହ, ଯେ ପିଣ୍ଟୁ ମହାପାତ୍ର ହେଉଛି ଏଇ 'ଛୋଟ ଜାତି' ଉପାଖ୍ୟାନର କର୍ତ୍ତା । ସେଇ କହିଥିବ କୋଉ ମଧ୍ୟସ୍ଥ ଆଗରେ କଥାଟାକୁ ବିଶ୍ୱାସ କରି ନ ପାରିଲା ପରି, - ''ଆଚ୍ଛା ? ମଧୁ ମାଳୀର ପୁଅ ଗଜି ସାଙ୍ଗରେ ବି ପଡ଼ିଛି ତା'ର ବାହାଘର ପ୍ରସ୍ତାବ ? ମନ୍ଦ ନୁହେଁ । କିନ୍ତୁ ମୁଁ ଶୁଣିଥିଲି ଗୋଟାଏ ଇଣ୍ଟରେଷ୍ଟିଙ୍ଗ୍ କଥା ମଧୁଙ୍କ ଫ୍ୟାମିଲି ବିଷୟରେ । ଅବଶ୍ୟ ମୋର ଜାତିଫାତିରେ ଟିକିଏ ହେଲେ ବିଶ୍ୱାସ ନାହିଁ, କିନ୍ତୁ ମୁଁ ଭାବିଥିଲି ଯେ ଜଗନ୍ନାଥବାବୁ ଯେମିତିକା ପୁରୁଣାକାଳିଆ ଲୋକ... ।'' ସେଇଠୁଁ ସିଏ କହିଥିବ ସେଇ 'ଇଣ୍ଟରେଷ୍ଟିଙ୍ଗ୍' କଥାଟାକୁ, ହୁଏତ ସେ ବି ଶୁଣିଥିବ ସେଇ ଗୁଜବ ଆଉ କାହାଠୁ, ମୋତେ ତଳକୁ ଗଡ଼େଇ ଦେବାପାଇଁ । ଏତେ ସାହସ ଗଜିଆର ? ମୁଁ ଯେଉଁ ଝିଅକୁ ବାହାହେବାକୁ ଚାହେଁ, ସେ ବି ହାତ ବଢ଼େଇଛି ତା' ଆଡ଼କୁ ?

କେମିତି ମିଛ ମଣିବି ମୋ ସନ୍ଦେହକୁ, ଯେତେବେଳେ ମୁଁ ଦେଖିଲି, ଇଂଜିନିୟରିଙ୍ଗ୍ ପାସ୍ କରି ଘରକୁ ଫେରି ଆସିଲା ପରେ, ଯେ ସେ ବାରମ୍ବାର ମୋତେ ବସେଇ ଦେଉଛି ମୋ ସ୍ୱସ୍ଥାନରେ, ଲଥିକିନି ବସେଇ ଦେଉଛି, ଯେତେବେଳେ ମୋର ସାହସ ହେଉଛି କେଉଁ କଣ୍ଟ୍ରାକ୍ଟ୍ ହାସଲ କରିବା ଲାଗି ଯାହାକୁ ସେ ବି ଚାହେଁ ? ଗୋଟାକ ପରେ ଗୋଟାଏ କଣ୍ଟ୍ରାକ୍ଟ୍ ଛଡ଼େଇ ନେଉଛି ମୋଠୁଁ । ମୁଁ ବି ଲାଞ୍ଚ ଦିଏ, ଆଉ ସିଏ ବି ଲାଞ୍ଚ ଦିଏ । ଆମେ ସମସ୍ତେ ଲାଞ୍ଚ ଦେଉ ଠିକଣା ସରକାରୀ କଣ୍ଟ୍ରାକ୍ଟ୍ ହାସଲ କରିବା ପାଇଁ । କିନ୍ତୁ ସେ ଯେଉଁ ଖଞ୍ଜାରେ, ଯେଉଁ ସ୍ତରରେ ଓ ଯେପରି ଭାବରେ ଲାଞ୍ଚ ଦେଇପାରେ, ଯେମିତିକି ତୀରଟା ଅବଶ୍ୟ ଲକ୍ଷ୍ୟଭେଦୀ ହେବ, ତା' ମୋ ଦେଇ ହେବ କେଉଁଠୁ ? କାହିଁ ମୋର ସେଇ ପ୍ରତିଭା, ସେଇ ଖାନ୍‌ଦାନି-ଗ୍ଲସ୍-ସାହେବୀ କଲ୍‌ଚର୍, ଯେଉଁଥିରେ ସେ ଜିଣିଯାଉଛି, ମୋତେ ଠେଲିଦେଇ ମୋର ସ୍ୱସ୍ଥାନକୁ ?

ଦିନର ଅବଶିଷ୍ଟ ଅଂଶ, ମୋଟାମୋଟି ସୂର୍ଯ୍ୟାସ୍ତ ଯାଏଁ, ଗଜେନ୍ଦ୍ରବାବୁ ମନେପକେଇଲେ ସେଇ ସମସ୍ତ ସୂକ୍ଷ୍ମସାଧନର କାହାଣୀ, ଯାହା ପିଣ୍ଟୁ ମହାପାତ୍ର ପ୍ରୟୋଗ

କରିଛି ତାଙ୍କ ଉପରେ ମୂଳରୁ ଆରମ୍ଭ କରି । ଦିହିଁଙ୍କ ପାଠପଢ଼ା ବେଳଠୁଁ । ହେଲେ ସେ ବାରମ୍ବାର କହୁଥିଲେ ତା'କୁ - କିନ୍ତୁ ପ୍ରକୃତରେ ତୁ ମୋତେ ଜିତିଯାଇ ନାହୁଁ । ମୁଁ ଜୋର୍ କରି କହୁଛି ସେକଥା । ଯେହେତୁ ମୋ ପାଖରେ ଅଛି ସେଇ ଜିନିଷଟା, ଯାହା ତୋଠିଁ ନାହିଁ । ସେଦିନର ସେଇ ଚଉକିରେ ବିଧାମରା ଉକ୍ତି ତୋ ଜଜ୍‌ସାହେବ ବାପାଙ୍କର - କ୍ୟାରାକ୍ଟର୍ ! ମୁଁ ତା'କୁ ଅକ୍ଷୁଣ୍ଣ ରଖିଛି । କେବେହେଲେ ତାକୁ ତଳେ ପକେଇ ନାହିଁ, ଖେଳି ନାହିଁ ତା' ସାଙ୍ଗରେ, ସାଲିସ୍ କରି ନାହିଁ । ବୁଝିଲୁ ?

ବଟୁମାମୁ, ମୋର ଅମିନ ଉପକାରୀ ମାମୁଙ୍କ ସାହାଯ୍ୟରେ ମୁଁ କଲେଜ୍‌ରେ ନାଆଁ ଲେଖେଇଲି ଏବଂ ତାଙ୍କରି ପ୍ରରୋଚନାରେ ମୁଁ ଗ୍ରାଜୁଏଟ୍ ପଢ଼ା ନ ସାରି ଇଞ୍ଜିନିୟରିଙ୍ଗ୍ ପଢ଼ିଲି । ମାମୁ କହିଲେ ଅନେକ ଫାଇଦା ସେଥିରେ । ଇଚ୍ଛା କଲେ ତମେ ସରକାରଙ୍କ ଦରମାଖିଆ ଚାକର ନ ହୋଇ ପୁଳାଏ ପୁଳାଏ ଧନ ନେଇ ଆସିପାରିବ ତାଙ୍କଠୁଁ । କଣ୍ଟ୍ରାକ୍ଟ ଅନୁଯାୟୀ । ବଡ଼ଲୋକଟିଏ ହୋଇପାରିବ ।

ସତେ ? ଶୁଣିଛି ଅମିନମାମୁଙ୍କର ଅନେକ ଅଭିଜ୍ଞତା ଅଛି ସେଦିଗରେ । ନାଆଁକୁ ଦରମା ଗଣ୍ଡିଏ ପାଆନ୍ତି ସିନା, କିନ୍ତୁ ଉପୁରି ଅନେକ ବେଶି ତା'ଠୁଁ । ବାପା କୁହନ୍ତି ହସି ହସି, ହେଲେ ମୁଁ ତା'ର ମର୍ମ ବୁଝୁ ନ ଥିଲି ସେତେବେଳେ ।

ଯାହାହେଉ ମୁଁ ଇଞ୍ଜିନିୟରିଙ୍ଗ୍ ପଢ଼ିଲି । ସହପାଠୀ ଚିନ୍ତୁ (ସେ କେବେହେଲେ ମୋ ସାଙ୍ଗ ହୋଇପାରିଲା ନାହିଁ, ହୁଏତ ସେଦିଗରେ ଆମର କୌଣସି ଚେଷ୍ଟା କିମ୍ବା ଆଗ୍ରହ ନ ଥିଲା) ଡେପୁଟି ମାଜିଷ୍ଟ୍ରେଟ୍‌ଟିଏ ହେଲା, ଏମ୍.ଏ.ପାସ୍ କଲା ପରେ । ବୋଧହୁଏ ତା' ଜଜ୍ ସାହେବ ବାପାଙ୍କ ପଛେ ପଛେ ଚାଲିବ ବୋଲି । କିନ୍ତୁ ମୁଁ ଆସିଷ୍ଟାଣ୍ଟ ଇଂଜିନିୟର୍ ଚାକିରିଟିଏ ଲୋଡ଼ିଲି ନାହିଁ ସରକାରଙ୍କ ଠାରୁ, ମୋ ପଢ଼ା ସରିଲା ପରେ । ବାପା ବହୁତ ଲଗେଇଲେ ମୋ ସାଙ୍ଗରେ, କିନ୍ତୁ ମୁଁ ମାନିଲି ନାହିଁ । ଘରେ ବସି ରହିଲି । ଛୋଟ ମୋଟ କଣ୍ଟ୍ରାକ୍ଟଟିଏ ମିଳିଯାଏ ବେଳେ ବେଳେ, ହେଲେ ସେଥିରେ ପେଟ ପୋଷିହେବ ନାହିଁ । ଅଥଚ ଏଣେ ବାହାହୋଇ ପଡ଼ିଲିଣି, ପିଣ୍ଟୁର ପଛେ ପଛେ, ତା' ସାଙ୍ଗରେ ବାଦ କଲା ପରି । ଯାହାହେଉ ମୁଁ ଟାଣରେ ଅପେକ୍ଷା କରି ରହିଲି, ଜବର୍ କଣ୍ଟ୍ରାକ୍ଟରଟିଏ ହୋଇ ବଡ଼ଲୋକ ହେବି ବୋଲି । ସେଇଠୁଁ ମୁଁ ଦେଖେଇ ଦେଇପାରିବି ପିଣ୍ଟୁକୁ, ଯେ ମୋର ସ୍ୱସ୍ଥାନ କୋଉ ତଳେ ନୁହେଁ ତୋଠୁଁ ।

ଏଣେ ପିଣ୍ଟୁ ବିଲାତ ଯାଇଥିଲା ବିଏ. ପାସ୍ କଲା ପରେ, ତା' ବଡ଼ଲୋକ ବାପାଙ୍କ ଅନୁଗ୍ରହରୁ । ସେଠି ଯାହାସବୁ ପାସ୍ କରି ଆସିଥିଲା, ସେଇ ଡିଗ୍ରୀର ଭାଉ ଯାହା ଥାଉ ନ ଥାଉ, ମୁଁ ଦେଖିଲି ଯେ ଗୋଟାଏ ନୂଆ ସାହେବୀ କଲ୍‌ଚର୍ ଫଉଲି ଯାଇଛି ତା' ଖାନ୍‌ଦାନି ଉପରେ ସେ ଫେରିଆସିଲା ପରେ । ବେଶିଭାଗ ସବୁ ଧୋତି ଓ ମଲ୍‌ମଲ୍

ପଞ୍ଜାବି ପିନ୍ଧୁଛି ଘରେ ଥିଲାବେଳେ, କିନ୍ତୁ କଥାକଥାକେ 'ମାଇ ଗୁଡ୍‌ନେସ୍ !' 'ଓ ଡିଅର୍ !' ଏମିତି କେତେ କ'ଣ କହୁଛି ଏବଂ ତା' ହସିବା କାଇଦା ବି ବଦଳିଗଲା ବୋଲି ମନେହେଉଛି । ମପାଚୁପା ହସ । କେତେବେଳେ କୁଳୁକୁଳୁ ତ କେତେବେଳେ ଉଛୁଳି ଉଠିଲା ପରି । କିନ୍ତୁ ସବୁ ଯେମିତି ଦେଶକାଳପାତ୍ର ଅନୁଯାୟୀ ତିଆରି ହୋଇଛି, ତା'ର ବିଭିନ୍ନ ଉଦ୍ଦେଶ୍ୟକୁ ଆଗେଇ ନେଲାପରି । ଯାହାହେଉ ଟୋକାର ସାହସ କେତେ ଦେଖ - ଦିନେ ମୋ ସାଙ୍ଗରେ ଦେଖା ହେଲା ପରେ ହାତଠାରି ଡାକିଲା ମୋତେ । ଆଉ ପଚାରୁଛି - "ଶୁଣୁଛି ତୁ ଗୋଟାଏ ଇଞ୍ଜିନିୟର୍ ହୋଇ ସାରିଲୁଣି ଯା' ଭିତରେ ? କ'ଣ ସିଭିଲ୍ ଇଞ୍ଜିନିୟର ନା ଇଲେକ୍‌ଟ୍ରିକାଲ ? ମୁଁ କହିଲି ମୁଁ ଡିଗ୍ରୀ ନେଇଛି ସିଭିଲ୍‌ରେ, କିନ୍ତୁ ଗୋଟାଏ ଡିପ୍ଲୋମା ବି ହାସଲ କରିଛି ଇଲେକ୍‌ଟ୍ରିକାଲ୍‌ର । 'ଆଚ୍ଛା ?' କହି ସେ ହସିଦେଲା ତା'ର କୁଳୁକୁଳୁ ହସଟିଏ, ବଦାନ୍ୟତା ଦେଖାଇଲାପରି, ଆଉ କହୁଛି - "ଇଞ୍ଜିନିୟରଟିଏ ହେବାକୁ ଚାହୁଁ ମୋ କମ୍ପାନୀରେ ? ଗୋଟାଏ ଜାଗା ଖାଲି ଅଛି ଏଇକ୍ଷଣି...।"

ମୋତେ ସମୟ ଲାଗିଲା ନାହିଁ କହିବାପାଇଁ - "ନୋ, ଥ୍ୟାଙ୍କ୍‌ସ ।" ଅନ୍ତତଃ ମନା କରିବାର ସେଇ ଇଂରେଜ ପଦଟି ବେଶ୍ ଜଣାଥିଲା ମୋତେ । ଏକାଧାରରେ ଭଦ୍ର, ହେଲେ ଟମକୁ ଜବାବ୍ ଦେଲା ପରି । ସେଇଠୁଁ ଫୁଟିଉଠିଲା ତା' ମୁହଁରେ, ସେଇ ସୁପରିଚିତ ଭ୍ରୁରୁଟେକା ବଙ୍କାହସର ବିଦ୍ରୂପ । ବୋଧହୁଏ ବେଶି ଧାରୁଆ ଏଇକ୍ଷଣି, ଟିକିଏ ବେଶି ଆଶ୍ଚର୍ଯ୍ୟ ହେଲାପରି । ହେଲେ ମୁଁ ତାକୁ କହିଲି ମନେ ମନେ, 'ନୋ ଥ୍ୟାଙ୍କ୍‌ସ, ଉତ୍ତାରୁ - ତୋ ତଳେ ମୁଁ ଚାକିରି କରିବି ? କେମିତି ତୁ ଭାବିଲୁ ସେ କଥା ?

ବୋଧହୁଏ ସେଇଦିନଠୁଁ ସେ ପଣକରି ବସିଲା ଛୋଟ ମୁହଁର ବଡ଼ କଥାକୁ ସହି ନ ପାରିଲା ପରି ଯେ ସେ କେବେହେଲେ ମୋତେ ମୋର 'ସ୍ୱସ୍ଥାନ'କୁ ଭୁଲିବାକୁ ଦେବ ନାହିଁ । ତେଣୁ ଯେତେବେଳେ ସେ ଜାଣିବାକୁ ପାଏ ତା'ର ଚରମାନଙ୍କଠାରୁ ଯେ ମୁଁ କୋଉ ବଡ଼- ଖାଲି ଲାଭ ଦୃଷ୍ଟିରୁ ବଡ଼ ନୁହେଁ, ମର୍ଯ୍ୟାଦାରେ ବଡ଼ - କଣ୍ଟ୍ରାକ୍ଟକୁ ହାତ ବଢ଼େଇଛି, ସେ ଚଟ୍‌କିନି ଭିଡ଼ିଯାଏ ତାକୁ ହାସଲ କରିବାଲାଗି । ମଧ ହାସଲ କରେ, ଅଧିକାଂଶ ଥର । ତା' ଲାଞ୍ଚର ପରିମାଣ ମୋଠୁଁ ବେଶି ବୋଲି ଏମିତି ହୁଏ ତା' ନୁହେଁ, ମାନେ କେବଳ ତା' ନୁହେଁ । ଏକ୍‌ଦମ୍ ଉପର ମହଲରେ ପହୁଞ୍ଚିଯାଏ ତା' ଲାଞ୍ଚ, ଯେଉଁଠିକି ମୋ ହାତ ପାଇବ ନାହିଁ ଏବଂ ସେଇ ହେଉଛି ତା' କଲ୍‌ଚର୍‌ର କରାମତି । ଯଥା :

ଯେଉଁ ଟେଣ୍ଡର୍ ଡକା ହୋଇଥିଲା 'ସ୍ୱାଧୀନତା ପାର୍କ୍' ପାଇଁ ପରିକଳ୍ପିତ ଘରବାଡ଼ି, ବଗିଚା, ଟୟ ଟ୍ରେନ୍, କୃତ୍ରିମ ପାହାଡ଼ ଓ ଜଳପ୍ରପାତ ସମେତ । ସେଥିପାଇଁ ମୋର ଆର୍କିଟେକ୍ଟ୍ ବନ୍ଧୁମାନେ ମୋତେ କମ୍ ସାହାଯ୍ୟ କରି ନ ଥିଲେ, ଅଳ୍ପ ଖର୍ଚ୍ଚରେ ଗୋଟାଏ ଚମତ୍କାର 'ପିଲାଙ୍କ ସ୍ୱର୍ଗ' ପ୍ରସ୍ତୁତ କରିବା ଲାଗି । କିନ୍ତୁ ବନ୍ଧୁ ଭାବରେ ସେ ବଡ଼ସାହେବଙ୍କ

ଘରେ ପହୁଞ୍ଚ (ସତେକି ତା'ର କୌଣସି ସମ୍ପର୍କ ନାହିଁ କୋଉ ସରକାରୀ କାମର ଟେଣ୍ଡର୍ ସାଙ୍ଗରେ) ଗୋଟାଏ ସୁଚିନ୍ତିତ ପରାମର୍ଶ ଦେଲା ମନୋରଞ୍ଜନର ସ୍ୱର୍ଗଟିଏ ଗଢ଼ିବାପାଇଁ ତାଙ୍କରି ଲନ୍‌ରେ, ତାଙ୍କ ସ୍ତ୍ରୀପିଲାଙ୍କ ଆନନ୍ଦ ପାଇଁ । ମୋ ଦେଇ ସେତକ ହୋଇପାରିଥାଆନ୍ତା କେମିତି ? କହିବା ବାହୁଲ୍ୟ ଯେ ତା'ରି କମ୍ପାନୀର ଟେଣ୍ଡର୍ ଗୃହୀତ ହେଲା ।

- ଆଉ ଗୋଟାଏ ଟେଣ୍ଡର୍ 'ଶ୍ରମିକ ନିବାସ' ଅର୍ଥାତ୍ ଲେବର୍ କଲୋନୀ ପାଇଁ । ତାକୁ ମଧ ମୁଁ ଝାଳନାଳ ହୋଇ ତିଆରି କରିଥିଲି । କିନ୍ତୁ ଇଏ ସିଧା ପହୁଞ୍ଚିଗଲା ଜଣେ ନେତାଙ୍କ ପାଖରେ, ଯେ ଶ୍ରମମନ୍ତ୍ରୀଙ୍କର ବିଶିଷ୍ଟ ବନ୍ଧୁ ଏବଂ ତାଙ୍କୁ କହିଲା କେତୋଟି କଥା, ଜଣେ ବିଜ୍ଞ ଓ ଶ୍ରମିକପ୍ରେମୀ ପରାମର୍ଶଦାତା ହିସାବରେ । ସେଠି ତା'ର କଲ୍‌ଚର୍, ଖାନ୍‌ଦାନି, ତେଣୁ କଲ୍ୟାଣକର ବଡ଼ଲୋକିର ରୂପ ଧାରଣ କଲା । ସେ ନେତାଙ୍କୁ ବୁଝାଇଲା ଯେ ଆମ ଦେଶର ଖଟିଖିଆ ଭାଇମାନେ ଆମ ପରମ୍ପରାର ବହିର୍ଭୂତ ନୁହଁନ୍ତି । ତେଣୁ ସେମାନଙ୍କର ମଧ ଗୋଟିଏ ଗୋଟିଏ ଅଗଣା ଦରକାର ତାଙ୍କ ଘର ଭିତରେ । ଯେମିତିକି ସେମାନେ ମଧ ଆକାଶକୁ ଅନେଇ ତାରା ଗଣିପାରିବେ । ମଧ ଲୁଚୁକାଳି ଖେଳିପାରିବେ ତାଙ୍କ ପିଲାଙ୍କ ସାଙ୍ଗରେ । ସେତିକି କ'ଣ ତାଙ୍କର ପ୍ରାପ୍ୟ ନୁହେଁ ? ଠିକ୍ କଥା । ନେତାଙ୍କ ମନକୁ ପାଇଗଲା ପିଣ୍ଟୁର ଅଯାଚିତ ପରାମର୍ଶ । ସେ ମନ୍ତ୍ରୀଙ୍କୁ କହିଲେ ଏବଂ ଯଥାକ୍ରମେ ବ୍ୟୟସାପେକ୍ଷ ହେଲେ ମଧ ଅଗଣାବିଶିଷ୍ଟ ଯେଉଁ ନକ୍‌ସାର ଟେଣ୍ଡର୍ ଆସିଥିଲା ମହାପାତ୍ର କନଷ୍ଟ୍ରକ୍‌ସନ୍ କମ୍ପାନୀଙ୍କଠାରୁ ତାହାହିଁ ସର୍ବୋତ୍କୃଷ୍ଟ ବୋଲି ବିବେଚିତ ହେଲା ।

- କ୍ୟାପିଟାଲ୍‌ରେ ଗୋଟିଏ ବହୁମୁଖୀ ଅଡ଼ିଟୋରିୟମ୍ ତିଆରି କରିବାର ଯୋଜନା ପାଇଁ ଟେଣ୍ଡର୍ ଡକା ହୋଇଥିଲା । ଯେଉଁଠି ରାଜ୍ୟସ୍ତରୀୟ ବକ୍ତୃତାମାଳା, ନାଟକ ସମାରୋହ, ମଧ ବିଭିନ୍ନ କଳାତ୍ମକ ପ୍ରଦର୍ଶନୀ ଆୟୋଜିତ ହୋଇପାରିବ । ବିଶେଷଜ୍ଞ ବନ୍ଧୁମାନଙ୍କ ସାହାଯ୍ୟରେ ମୁଁ ଗୋଟିଏ ଚମତ୍କାର ଟେଣ୍ଡର୍ ପ୍ରସ୍ତୁତ କରିଥିଲି । ଏଥର ମୋର କୌଣସି ସନ୍ଦେହ ନଥିଲା ।ଯେ ମୋରି ଟେଣ୍ଡର୍ ଗୃହୀତ ହେବ । କିନ୍ତୁ ଆଶ୍ଚର୍ଯ୍ୟ ହେଲି ଯେତେବେଳେ କଣ୍ଟ୍ରାକ୍ଟ୍ ମିଳିଲା 'ଚନ୍ଦ୍ରଭାଗା ଏଣ୍ଟର୍‌ପ୍ରାଇଜ୍' ନାମକ ଗୋଟିଏ ସଂସ୍ଥାକୁ । ପରେ ବୁଝିଲି ଯେ ତା'ର ଟାଣୁଆ ପୁଞ୍ଜିଗତ ସମ୍ପର୍କ ଅଛି 'ମହାପାତ୍ର କନଷ୍ଟ୍ରକ୍‌ସନ୍ କମ୍ପାନୀ' ସାଙ୍ଗରେ ଏବଂ ଏଠି ମଧ ପିଣ୍ଟୁ ମହାପାତ୍ରର କଲ୍‌ଚର୍ କେମିତି କାମ ଦେଲା କହିବି ? ଜଣେ ସୁଶ୍ରୀ ଅବସରପ୍ରାପ୍ତ ଅଧ୍ୟାପିକା ମନ୍ଦାକିନୀ **ରାଉତ ଭାରତୀୟ** ସଂସ୍କୃତିର ଏକ ବିଶିଷ୍ଟ ପୁରୋଧା ଭାବରେ ଗଣା । ସେଇ ଥିଲେ **ଟେଣ୍ଡର୍ କମିଟିର** ବେସରକାରୀ ପରାମର୍ଶଦାତା ଏବଂ ଚନ୍ଦ୍ରଭାଗା ଏଣ୍ଟର୍‌ପ୍ରାଇଜ୍'କୁ କଣ୍ଟ୍ରାକ୍ଟ ମିଳିବାର ଅଳ୍ପ କିଛି ଦିନ ପରେ ଶୁଣିବାକୁ ମିଳିଲା ଯେ ସେ ପିଣ୍ଟୁର 'ଉତ୍କଳ କଳାକୁଞ୍ଜ' ନାମକ ସାଂସ୍କୃତିକ ଅନୁଷ୍ଠାନର ଅଧ୍ୟକ୍ଷା ଭାବରେ ନିଯୁକ୍ତ ହୋଇଛନ୍ତି । ଏଇ କ'ଣ ହୋଇ ନ ଥିବ ଏକ

ଅତିବିଶିଷ୍ଟ ସାଂସ୍କୃତିକ ଆଦାନପ୍ରଦାନ, ଯାହା ପିଣ୍ଟୁ ପାଇଁ ସହଜ ଥିଲା, କିନ୍ତୁ ମୋ ଇଲାକାରେ ନାହିଁ ?

କିନ୍ତୁ ତୋର ସାଂସ୍କୃତିକ ବଡ଼ପଣ ଓରଫ୍ ଉଚ୍ଚାଙ୍ଗ ବଡ଼ଲୋକି ପୂରାପୂରି ଭେକାଲ୍ । ମୁଁ ଜାଣିଛି ସେକଥା, ଆଉ ଜାଣିଲାବାଲା ଜାଣିବେ । ଉପରବେଳା ତାଙ୍କ ଗୋଟିକିଆ ବିଛଣାରେ ଶୋଇ ଗଜେନ୍ଦ୍ରବାବୁ ଗୋଟି ଗୋଟି କରି ଗଣୁଥିଲେ ତା'ର ଉପାଦାନ ବିଶେଷ :

ଏକେ ତୋର ଚେହେରା । ଗୋରା ପାତଳା ଦେହ । ସରୁ ନାଲିଚିଆ ଓଠ । ଘଞ୍ଚ ଭୂଲତା । ଅର୍ଦ୍ଧନାରୀ ଆଖି । କେତେକେ ତାକୁ ସୁନ୍ଦର ବୋଲି କହିବେ, କିନ୍ତୁ ମୁଁ ମାନିବାକୁ ନାରାଜ । ମୁଁ ତାକୁ ମୋଟାମୋଟି ଗୋଟାଏ ମାଇଚିଆ ଚେହେରା ବୋଲି କହିବି । ମାନେ ଯାହାକୁ ସୁପୁରୁଷର ଚେହେରା ବୋଲି କୁହାଯାଇ ନ ପାରେ । ଯେମିତିକା ଚେହେରା ପାଇଛି ଏଠିକାର ଡଃ ସେନ୍‌ଜଣକ । ଲମ୍ବା ଚଉଡ଼ା ଦେହ ଏବଂ ଠିକଣା ଆଖିନାକ ସାଙ୍ଗକୁ ଗୋଟାଏ ଦୃଢ଼ତା ଅଛି ସେଇ ଚେହେରାରେ । ସେ ମଧ ପାଠୁଆ, ସେ ମଧ ବଡ଼ଲୋକ ଏବଂ ପୁରୁଷ ପୁରୁଷ ଧରି କେଉଁ ରଜାଘରର ଦାୟାଦ ବୋଲି ମନେହୁଏ । ଯାହା ଖାପ୍ ଖାଇଯାଉଛି ତା'ର ବ୍ୟକ୍ତିତ୍ୱ, ତା'ର କ୍ୟାରାକ୍ଟର୍ ସାଙ୍ଗରେ ଏବଂ ଯେଉଁଥିରେ ତୁ ଜିରୋ !

ଆଉ ତୋର ଧନସମ୍ପତ୍ତି । ଯାହାକୁ ତୁ ଖଟେଇଛୁ ତମ ସଂଭ୍ରାନ୍ତ ଓ ସୌଖୀନ ବଡ଼ଲୋକ ସମାଜର ସଭ୍ୟ ହେବା ପାଇଁ ତଥା ଠିକଣା ଜାଗାରେ ମୋଟା ଲାଞ୍ଚ ପହୁଞ୍ଚେଇ ଦେବାପାଇଁ । କିନ୍ତୁ ତୁ ତାକୁ ନିଜ ଚେଷ୍ଟାରେ ଠୁଳ କରି ନାହୁଁ । ବିରାଟ ମୂଳଧନ ମିଳିଛି ତୋତେ ତୋ ଜଜ୍‌ସାହେବ ବାପା ଓ ସେବେକାର ବଡ଼ ଜମିଦାର ଜେଜେବାପାଙ୍କ ସଂଚୟରୁ, ତାଙ୍କରି କୃପାରୁ । ସେଥିରେ ତୋର କିଛି ବାହାଦୁରି ନାହିଁ । ସେଇ ମୂଳଧନର ଜୋର୍‌ରେ ତୁ ବିଲାତ ଗଲୁ, ଆଉ ମୁଁ ଏଇଠି ପଡ଼ି ରହିଲି । ତେଣୁ କଲ୍‌ଚର୍ ପାଇଁ ଯେଉଁ ସାହେବୀ ଖୋରାକ୍ ମିଳିଲା ତୋତେ, ମୋତେ ମିଳିଲା ନାହିଁ ସେମିତି କିଛି ।

ହେଲେ ସେଇ ଯେଉଁ ଖୋରାକ୍ ମିଳିଲା ତୋତେ, ଖାନ୍‌ଦାନିଯୁକ୍ତ ସାହେବୀ ଠାଣି, କଥାକୁହା ଓ ଚାଲିଚଳଣ, ତାକୁଇ କ'ଣ କଲ୍‌ଚର୍ କହିବ ?

ସେଇଠୁଁ ଗଜେନ୍ଦ୍ରବାବୁଙ୍କର ମନେହେଲା ପିଣ୍ଟୁ କହୁଛି ତାଙ୍କୁ ମହାନୁଭବ ହସଟିଏ ଛାଡ଼ି ଦେଇ - ଆରେ, ତୁ ସହଜେ ବୁଝିବୁ ନାହିଁ ସେକଥା, ଗଜି । ଯେଉଁ ମଗଜ ମିଳିଛି ତୋତେ ତୋ ବାପଅଜାଙ୍କଠାରୁ, ତା' ଭିତରକୁ ଯାଇପାରିବନି ତା'ର ଭେଦ । ଖାଲି ଆଦବ୍ କାଇଦା, ପୋଷାକ ପହରଣ, କଥାଚାତୁରୀ ଇତ୍ୟାଦିକୁ କଲ୍‌ଚର୍ କୁହାଯାଏ ନାହିଁ । ତା'ର ଅସଲ ପରିଚୟ ମିଳେ ଜଣେ ଯେଉଁ ବିଦ୍ୟାବୁଦ୍ଧିର ଝଲକ ଦେଖାଇ ପାରୁଛ ସମାଜର ବିଉଟିଫୁଲ୍ ପିପ୍‌ଲ୍', ଅର୍ଥାତ୍ ସମ୍ଭ୍ରାନ୍ତ ସୁନ୍ଦର ନରନାରୀଙ୍କ ଗହଣରେ ।

କଲ୍‌ଚର୍‌ରେ ଅଛି ଗୋଟାଏ ସର୍ବଜାଣ ଭାବର ପତିଆରା । ମୋର ସେତିକି ଅଛି ଏବଂ ତା'ର କୌଣସି ସମ୍ପର୍କ ନାହିଁ ତମର ଡିଗ୍ରୀ କି ବାସ୍ତବ ଅଭିଜ୍ଞତା ସାଙ୍ଗରେ ।

ହଁ, ଜାଣିଛି, ଜାଣିଛି - ଗଜେନ୍ଦ୍ରବାବୁ ଜବାବ୍ ଦେଲେ । ମୁଁ ମାନୁଛି ଯେ ସେଥିପାଇଁ ତୋତେ କେଇଟା ମାର୍କ ଅବଶ୍ୟ ମିଳିବା ଉଚିତ । କିନ୍ତୁ ସେଇ ଉପରଠାଉରିଆ ବିଦ୍ୟାବୁଦ୍ଧିର ଝଲକ, ବହିମାନଙ୍କର କଭରଜ୍ୟାକେଟ୍‌ରୁ ପଢ଼ିଥିବା ପାଠ, ଆଉ କେଇଟା ପାଠୁଆ ଶବ୍ଦଯୋଜନା, ସେସବୁ କିଭଳି ଆଲୁଅ ଦେଇପାରିବ କାହାକୁ, କେଉଁ ପ୍ରକାର ଅଜ୍ଞାନ ଦୂର କରିପାରିବ କାହାର, ତା' ଭାବିବା କଥା ।

କେତେବେଳେକେ ଗଜେନ୍ଦ୍ରବାବୁ ହାଲିଆ ହୋଇଗଲେ ଏବଂ କହିଲେ ଗୋଟାଏ ଦୀର୍ଘନିଃଶ୍ୱାସ ଛାଡ଼ି - ଛାଡ଼ ! ମୋତେ କ'ଣ ମିଳିବ ସେଥିରୁ ?

ସେଇଠୁଁ ସେ ମଧ୍ୟ ସଦୟ ହେବାକୁ ଚାହିଁଲେ ସ୍ୱର୍ଗତଃ ପରମାନନ୍ଦ ଓରଫ୍ ପିଣ୍ଟୁ ମହାପାତ୍ରଙ୍କ ଉପରେ - ସରି ପିଣ୍ଟୁ ! ଯେତେହେଲେ ତୁ ଆଉ ନାହୁଁ ଆମ ଗହଣରେ, କିନ୍ତୁ ମୁଁ ଅଛି । ହଠାତ୍ ହାର୍ଟ୍‌ଫେଲ୍‌ରେ ଚାଲିଗଲୁ ଏବେ, କୋଉ ଅସନା ରୋଗରେ ଘାଣ୍ଟି ନ ହୋଇ । ତୋର ସମ୍ଭ୍ରାନ୍ତସୁନ୍ଦର ଜୀବନଚରିତର ଆଉ ଗୋଟାଏ ନମୁନା ଦେଖାଇଲା ପରି । ନା, ସ୍ୱର୍ଗବାସୀମାନଙ୍କ ପ୍ରତି ଆକ୍ଷେପ କରିବା ଉଚିତ ନୁହେଁ । ସେତିକି ସୌଜନ୍ୟ ଅନ୍ତତଃ ଅଛି ମୋ ପାଖରେ, ଯାହାକୁ ସଂସ୍କୃତିଗତ ବୋଲି କୁହାଯିବ । କିନ୍ତୁ ସତରେ ପିଣ୍ଟୁ ମୋତେ ଭାରି ଖରାପ ଲାଗିଲା ମୁଁ ଯେଉଁ ଦୃଶ୍ୟଟା ଦେଖିଲି ଆଜି । ଛିଃ ! ମଂଜୁକୁ ଏ ବୁଦ୍ଧି କିଏ ଦେଲା ? ଏତେ ଶୀଘ୍ର ଭୁଲିଗଲା ତୋତେ ?

ସୂର୍ଯ୍ୟ ପଶ୍ଚିମ ଦିଗକୁ ଢଳି ଗଲା ବେଳକୁ ଗଜେନ୍ଦ୍ରବାବୁ ବାହାରକୁ ଆସି କରିଡର୍‌ର ରେଲିଙ୍ଗ୍‌କୁ ଧରି ଠିଆହେଲେ ଏବଂ ଭାବିଲେ ଯେ ପିଣ୍ଟୁଟା ଆହୁରି ଅଧିକ ଦୟାର ଯୋଗ୍ୟ । ତା' ମାଇପ କଥା ଛାଡ଼, ଦେଖିବାକୁ ଗଲେ କ'ଣ ଟା ଛାଡ଼ିଯାଇଛି ସେ ଯାହା ମୋର ନାହିଁ ଏବଂ ଯେଉଁଥିପାଇଁ ମୋର ହିଂସା ଆସିବ ତା' ପ୍ରତି ?

ଅନେକ ବର୍ଷ ହୋଇଗଲାଣି, ମୁଁ ତମ ସାଙ୍ଗରେ ଆଉ ବାଦ କରୁ ନାହିଁ ଏବଂ କୋଉ କଣ୍ଟ୍ରାକ୍ଟ୍‌ରେ ହାରିଗଲେ ଦୁଃଖ କରୁ ନାହିଁ । ତୁ ବି ଆଉ କୋଉ କଣ୍ଟ୍ରାକ୍ଟର୍ କି ଶିଳ୍ପପତି ହୋଇଅଛୁ ? ତୋ'ର କଲ୍‌ଚର୍ କେତେ ଭୁଆଁ ବୁଲେଇଲାଣି ତୋତେ । 'ଉତ୍କଳ କଳାକୁଞ୍ଜ' ତ ଅଛି ତା' ଜାଗାରେ, ତୁ କିନ୍ତୁ ଆଉ କେତେ ଆଡ଼େ ବୁଲି ଆସିଲୁଣି । ସିନେମା ରାଇଜକୁ ଯାଇ ଗୋଟାଏ ତଥାକଥିତ ପ୍ରଗତିମୂଳକ ଫିଲ୍ମ୍‌ର ନିର୍ମାତା-ନିର୍ଦ୍ଦେଶକ ହୋଇଥିଲୁ । ବକ୍‌ସ ଅଫିସ୍ ଅନୁଯାୟୀ ଫିଲ୍ମ୍‌ଟା ପୂରାପୂରି ଫ୍ଲପ୍ ବୋଲି ଶୁଣିଛି, ହେଲେ କିଛି ପ୍ରଶଂସା ମିଳିଛି ତୋତେ, କାଁ ଭାଁ କେଉଁ ଖବରକାଗଜର ସ୍ତମ୍ଭରେ । ରାଜନୀତିରେ ବି' ପଶିଛୁ । ଶୁଣାଯାଏ ପୁଳାଏ ପୁଳାଏ ଦେଇଛୁ ନେତ୍ରୀ ସୁଲେଖା ସାହୁ ଓ ତାଙ୍କ ଦଳକୁ ।

ସର୍ବମଙ୍ଗଳ ଦଳ ତରଫରୁ । ଯେମିତିକି ବାକି ରହି ଯାଇଥିବା ସେଇ ବିରୋଧୀ ଦଳଟା - 'ପ୍ରଜାଶକ୍ତି' କି କ'ଣ ତା' ନାଆଁ, - ସିଏବି ମିଶିଯିବ ଶାସକ ସର୍ବମଙ୍ଗଳଙ୍କ ସାଙ୍ଗରେ, ଆଉ ଦିହେଁ ମିଶି ରାଜତ୍ୱ କରିବେ ଆମ ଉପରେ, ଆକାଶରେ ସୂର୍ଯ୍ୟଚନ୍ଦ୍ର ଥିବାଯାଏଁ । ପୁଣି ସାରା ପୃଥିବୀ ବୁଲି ଆସିଛୁ ଏବଂ ଫେରିଆସି କେତେ ବଡ଼ ବଡ଼ କଥା କହିଛୁ ସାମ୍ବାଦିକମାନଙ୍କୁ, ଆମ ଦେଶକୁ ଉଦ୍ଧାର କରିବା ଲାଗି । କିନ୍ତୁ ତୁ ନିଜେ କୋଉ ସିଂହାସନରେ ବସିପାରିଛୁ କହିଲୁ ? ଖାଲି ଗୋଟାଏ ଫମ୍ପା ସୁଖ୍ୟାତି ଏବଂ ବୈଷୟିକ ସମୃଦ୍ଧି, ଅଳ୍ପବହୁତ ।

କିନ୍ତୁ ଭାବୁଛି ତୋ ସମୃଦ୍ଧିରେ ମଧ ଯଥେଷ୍ଟ ଆଞ୍ଚ ଲାଗିଥିବ, ତୁ ଯେମିତି ଖେଳେଇ ହୋଇ ଯାଉଛୁ ଏଇସବୁ ସାଂସ୍କୃତିକ କାରବାରରେ । ମୁଁ ଯାହା ଜାଣେ ସେଇ ଗୋଟିଏ ବଙ୍ଗଳା ଅଛି ତୋର କ୍ୟାପିଟାଲ୍‌ରେ, ତୋ ପୈତୃକ ଘରକୁ ଛାଡ଼ି । ହଁ, କଲିକତାରେ ଗୋଟାଏ ଫ୍ଲାଟ୍ ବି ଅଛି ବୋଲି ଶୁଣିଛି, ତୋର କୋଉ ସଂସ୍କୃତି-ପ୍ରେମିକା ପାଇଁ ।

ଶେଷକୁ ତୁ ନିଜେ ଅକାଳରେ ଚାଲିଗଲୁ । ଆଉ ତୋର ମାଇପକୁ ବି ଧରି ରଖିପାରିଲୁ ନାହିଁ ! ବିଚରା !

ମୁଁ କେବେଠୁଁ ଦୂରେଇ ଗଲିଣି ତୋ କକ୍ଷରୁ, ତୋ ଉଚ୍ଚାଂଗ ବଡ଼ଲୋକି ସାଙ୍ଗରେ ତାଳ ଦେଇ ନ ପାରି, କିନ୍ତୁ ମୁଁ କିଛି କମ୍ ବଡ଼ଲୋକ ନୁହେଁ ପିଣ୍ଟୁ । ମୁଁ ବି ଯୋଡ଼ାଏ କୋଠା ତୋଳିଛି । ଗୋଟାଏ ଏଇ ଆମ ଜନ୍ମସ୍ଥାନ ପୁରୁଣା ସହରରେ, ଆଉ ଗୋଟାଏ କ୍ୟାପିଟାଲ୍‌ରେ, ଭବିଷ୍ୟତ ପାଇଁ । ଆଉ ମୁଁ ମୋର ଉପାର୍ଜନକୁ ଏମିତି ଖେଳେଇ ଦେଇ ନାହିଁ ତୋ ଭଳି । କାରଣ ମୁଁ ଜାଣେ ଯେ ଅବଶେଷରେ ଏଇ ଟଙ୍କାହିଁ କାମ ଦେବ, ଉପରକୁ ଉଠିବା ପାଇଁ । ହୁଏତ ମୁଁ ପାରିଲି ନାହିଁ, ଆଉ ମୋ ପୁଅ ଦି'ଟା ବି ଦଗା ଦେଲେ ମୋତେ...

ଏଇଠି ଗଜେନ୍ଦ୍ରବାବୁ ଅଟକିଗଲେ ମୁହୂର୍ତ୍ତକ ପାଇଁ । ହେଲେ ଦବିଗଲେ ନାହିଁ ଏବଂ ପୁଣି କହି ଚାଲିଲେ ଦୁନିଆର ଅବଗତି ପାଇଁ, ପରିବାରକୁ ସ୍ମରଣ କରିବା ପରେ - କେତେଜଣଙ୍କୁ ଜଣା ଯେ ଏଇ ମହା ବଡ଼ଲୋକିଆ ଆଉ ସ୍ପେଶାଲ୍ ହୋଟେଲ୍‌ର ମାଲିକ ହେଉଛି ମୋର ମାମୁପୁଅଭାଇ ? ଆମ କରିତ୍‌କର୍ମା ବଟୁମାମୁଙ୍କ ପୁଅ । ସେ ବି ବଡ଼ଲୋକ ହୋଇଛି, ଅନେକ ତୁଠରେ ପାଣି ପିଇ ଆସିଲା ପରେ । ଆଉ ମୁଁ ଏଠି ରହି ନାହିଁ ଅନ୍ୟତମ ଭଡ଼ାଟିଆ ଅତିଥି ହିସାବରେ । ମୁଁ ମଧ କିଛି ମୂଳଧନ ଯୋଗାଇଛି ସୁନୀଲ୍‌କୁ, ଏଇ 'ପ୍ରଦୋଷ ବିଳାସ'କୁ ଗଢ଼ି ତୋଳିବା ଦିଗରେ । ଏବଂ କହିଛି ମୋର ସୁଧ ଦରକାର ନାହିଁ । ମୂଳଧନ ବି କେବେ କେଉଁ ଭାବରେ ଶୁଝେଇବୁ, ତା' ତୁ ଜାଣିଛୁ । କିନ୍ତୁ ଗୋଟାଏ ସର୍ତ୍ତ ଅଛି ମୋ ଆଡୁ । ମୋ ପାଇଁ ଗୋଟାଏ ରୁମ୍ ରିଜର୍ଭ ଥିବ ଏଠି । ଏବଂ ଯେତେବେଳେ ମନହେବ ମୋର, ମୁଁ ଆସିବି ଏଠିକି । ମୋ ସ୍ତ୍ରୀ ଲାବନୀକୁ ସାଙ୍ଗରେ ଧରି, କିମ୍ବା

ଏକୁଟିଆ । ହେଲେ କହିଲି ନାହିଁ ମୁଁ କେଉଁଥିପାଇଁ ଆସିବି । ଆସିବି ଗୋଟାଏ ବିଶେଷ କାରଣରୁ । ତମ ବଡ଼ଲୋକି ସମାଜର ସଫଳ ବୁଢ଼ାବୁଢ଼ୀମାନଙ୍କୁ (ହୁଏତ ସଫଳ ସୁପୁତ୍ରମାନଙ୍କ ବାପାମାଆମାନଙ୍କୁ) ଆହୁରି ଟିକିଏ ପାଖରୁ ଦେଖିବି ବୋଲି । ଦେଖିବି କେମିତି ଉପଭୋଗ କରୁଛନ୍ତି ସେମାନେ, ତାଙ୍କ ସଫଳ ଜୀବନର ପ୍ରଦୋଷକୁ ।

ମୁଁ ମୋଟେ ବୁଢ଼ା ହୋଇ ନାହିଁ ଏମାନଙ୍କ ତୁଳନାରେ । ସବୁ ଦିଗରେ ପୂରାପୂରି ଫିଟ୍ (ଲାବନୀଙ୍କୁ ପଚାରିପାର), ହେଲେ ପଅଁଷଠି ପାରି ହୋଇଯାଇଛି ତ ? ସେଥିଲାଗି ସୁନୀଲ୍ କାବା ହୋଇଗଲା ମୁଁ ଯେତେବେଳେ ସତସତିକା ଆସି ପହୁଞ୍ଚିଗଲି ଏଠି ପ୍ରଥମଥର, ବୋକଚାପତ୍ର ବାନ୍ଧି । ଆଉ କହିଲା, - ''କ'ଣ ହେଲା ଗଜିଭାଇ ? ଭାଉଜଙ୍କ ସାଙ୍ଗରେ କଜିଆ କରିଛ ନା ଆଉ କିଛି ମହତ୍ ଉଦ୍ଦେଶ୍ୟ ଅଛି ତମର ?'' କିଛି ଉତ୍ତର ନ ଦେଇ ଟିକିଏ ହସିଦେଲି ଖାଲି । କ'ଣଟା ବୁଝେଇବି ତୋତେ, କେମିତି ବୁଝେଇବି ମୋର 'ମହତ୍ ଉଦ୍ଦେଶ୍ୟ' ବିଷୟରେ ?

ଯାହାହେଉ ଏତେଦିନକେ ଗୋଟାଏ ବିରାଟ ପୁରସ୍କାର ମିଳିଲା ମୋତେ । ଆଜି ସକାଳର ସେଇ ଅପରୂପ ଦୃଶ୍ୟ । ଧନ୍ୟବାଦ ।

ହେଲେ ମୁଁ ପ୍ରକୃତରେ ଆସିଛି ଏଠିକି ଏଥର ସୁନୀଲ୍‌ର ଭାଉଜ ଉପରେ ରୁଷି । ଭାଉଜ ନୁହେଁ, ତା' ଜରିଆରେ ମୋର ସାରା ପରିବାର ଉପରେ । ଯଦିଓ ତା'ର କାରଣ ବୁଝେଇ ହୋଇ ନ ଥାଆନ୍ତା ସୁନୀଲ୍‌କୁ, କିମ୍ବା ଆଉ କାହାକୁ ।

ହେଲେ ଦୁଃଖର କାରଣ ଅଛି । ଏଥର ଗଜେନ୍ଦ୍ରବାବୁ ସ୍ୱୀକାର କଲେ ତାଙ୍କର ଦୁଃଖ, ତାଙ୍କର ସମସ୍ତ ଧନସମ୍ପତ୍ତି ସତ୍ତ୍ୱେ, କିନ୍ତୁ ତା'ର ସଫେଇ ଦେବାକୁ ଲାଗିଲେ ନିଜକୁ ।

ପରିବାର ବୋଇଲେ ଦି' ପୁଅ ଆଉ ଝିଅଟିଏ, ଲାବନୀକୁ ଛାଡ଼ି । ଝିଅଟା ଭଲରେ ଭଲରେ ବାହାହୋଇ ଯାଇଛି । ଆପଣା କୁଳରେ । ଯେଉଁମାନେ ପ୍ରକୃତ ବଡ଼ଲୋକ, କିନ୍ତୁ ବଡ଼ଲୋକିଆ ସମାଜର କେହି ନୁହନ୍ତି । ଜ୍ୱାଇଁ ଡାକ୍ତର, ସମୁଦୀ ଗୋଟିଏ ସାନ କଲେଜର ଲାଇବ୍ରେରୀଆନ୍ ଥିଲେ । କିଛିହେଲେ ଡିମାଣ୍ଡ୍ କରି ନାହାନ୍ତି ସେମାନେ, ଯଦିଓ ମୁଁ ଯାହା ଦେବାର ଦେଇଛି ମୋ ଝିଅକୁ, ମୋର ଶକ୍ତି ଅନୁଯାୟୀ । କିନ୍ତୁ ମୋର ଦୁଃଖ ମୋର ଦି'ପୁଅଙ୍କୁ ନେଇ ।

ବଡ଼ ସତୁ (ସତ୍ୟବ୍ରତ) ତା' ବାପକୁ ବଳିଗଲା ତା' ରାଗରେ । ରାଗକୁ ଧରି ରଖି ପାରିଲା ନାହିଁ ନିଜ ଭିତରେ । ବିପ୍ଲବର ଦୁହା ଉଠେଇଲା ଏଇ ସ୍ୱାର୍ଥୀ ବଡ଼ଲୋକ ସମାଜ ଉପରେ । ହଉ, ଏଥିରେ କିଛି ଭାବିବାର ନାହିଁ । ଆଶା କଲି ଯେ ଯଥାସମୟରେ ପୁଅ ବାଗକୁ ଆସିବ, ଯେତେବେଳେ ବାହାସାହା ହେବ, ଆଉ ପିଲାଛୁଆଙ୍କ ପାଇଁ କିଛି

ରୋଜଗାର କରିବାର ଦାୟିତ୍ୱ ପଡ଼ିବ ତା' ଉପରେ । କିନ୍ତୁ କଥାଟା ସେଯାଏଁ ଗଲା କୋଉଠୁ ? ଦିନେ ସକାଳୁ ସକାଳୁ ସେ ଅନ୍ତର୍ଦ୍ଧାନ ! ଲମ୍ୱାଚଉଡ଼ା ଚିଠି ଖଣ୍ଡେ ଲେଖି ଯାଇଛି ବାପାବୋଉଙ୍କ ପାଇଁ । ଯେ ସେ ପ୍ରତ୍ୟକ୍ଷ, ହେଲେ ଭିତିରିଆ ବିପ୍ଲବ, ମାନେ 'ଗରିଲା' ଯୁଦ୍ଧରେ ଯୋଗ ଦେବ ବୋଲି ସ୍ଥିର କରିଛି । ସେଇ ହେଉଛି ସମାଜକୁ ଓଲଟେଇ ଦେବାର ଉପାୟ । ଏବଂ ଓଲଟେଇ ଦେଲେ ଯାଇଁ ତା'ର ମଙ୍ଗଳ ହେବ, ଅନ୍ୟଥା ନୁହେଁ । କିନ୍ତୁ କେମିତି ଓଲଟେଇବୁ ? ଘରପୋଡ଼ି, ଲୁଟ୍‌ତରାଜ୍, ନା ଆଉ କ'ଣ ? କ'ଣ ତୋ'ର ସେଇ ପ୍ରତ୍ୟକ୍ଷ ଓ ଭିତିରିଆ ବିପ୍ଲବର ଖସଡ଼ା ? ନକ୍‌ସଲ୍‌ପନ୍ଥୀ, ମାଓବାଦୀ, ପିପୁଲସ୍ ୱାର୍ ଗ୍ରୁପ୍ ନା ଆଉ କୋଉ ବିପ୍ଳବୀ ଦଳର ଖସଡ଼ା ପାଇଯାଇଛି ତୋ ମନକୁ ? ଇଡ଼ିଅଟ୍ ! ମୁଁ ରାଗେ ତା' ଉପରେ, ମଧ କାନ୍ଦେ ନିଜ ଭିତରେ, ହେଲେ କୌଣସିମତେ ତା' ବୋଉକୁ ବୁଝେଇ ହୁଏ ନାହିଁ । ଆସି ଦଶବର୍ଷ ହେଲାଣି, କିନ୍ତୁ ତା'ର ପତ୍ତା ନାହିଁ । ଖାଲି ଆଶା କରିବା କଥା ଯେ ପୁଅ ଆମର ବଞ୍ଚିଛି । ଏବଂ କେବେହେଲେ ଫେରି ଆସିବ ତା' ଘରକୁ ।

ଏଇ ପରିପ୍ରେକ୍ଷୀରେ ସବୁ ଆଶା ଭରସା ଲଦି ହୋଇଗଲା ତା' ସାନଭାଇ ଦେବୁ (ଦେବବ୍ରତ) ଉପରେ । ଦେବୁ ମଧ ଭଲ ପାଠପଢ଼ି ଗୋଟାଏ କମ୍ପାନୀ ଚାକିରିରେ ପଶିଛି ଏଇକ୍ଷଣି । କିନ୍ତୁ ସେ ବି ଆଉ ପ୍ରକାରେ ବିପ୍ଳବର ନମୁନା ଦେଖେଇଲା । ଆମେ ଗୋଟିଏ ସୁନ୍ଦରୀ ଗୁଣବତୀ ଝିଅ ବାଛିଥିଲୁ ତା' ପାଇଁ । ଆମରି କୁଳର । ମଧ କଲେଜ ଯାଏଁ ପଢ଼ିଛି । କିନ୍ତୁ ଏ ଟୋକା ମନ୍ଦିରକୁ ଯାଇ ବାହା ହୋଇପଡ଼ିଲା ତା'ର ସହକର୍ମିଣୀ ନମିତା ସ୍ୱାଇଁକୁ । ଏବଂ ଦି'ଜଣ ଯାକ ଫେରି ଆସି ମୁଣ୍ଡିଆ ମାରିଲେ ଆମକୁ, ଆମର ଆଶୀର୍ବାଦ ଭିକ୍ଷା କରି । ବେହିଆ କ'ଣ ଆଉ ଗଛରେ ଫଳନ୍ତି ? ଲାବନୀ ମୋତେ ବୁଝେଇବାକୁ ବସିଲା ଯେ ଏମିତିକା ଲଭ୍ ମ୍ୟାରେଜ୍ ତ ଘରେ ଘରେ ହେଉଛି ଏଇକ୍ଷଣି, - ସେଥିକୁ ଉପାୟ କ'ଣ ? କିନ୍ତୁ ବୋହୂଟି ମୋ ମନକୁ ପାଉଛି । କ'ଣ କହୁଛ ?

ପୁଅବୋହୂଙ୍କ ଉପରେ ରାଗିହେବ ନାହିଁ । କିନ୍ତୁ ମୋତେ ଚିଡ଼ିମାଡ଼ିଲା ଲାବନୀର ଏଇ ସାକୁଲା କଥାକୁ ନେଇ । ମୋତେ ପାଠ ପଢ଼ଉଛି ମୋ ହୁଣ୍ଡୀ ସ୍ତ୍ରୀ ! ଲଭ୍ ! ଛେନାଗୁଡ଼ ପାଚିଲା କଦଳୀ ! କୋଉ ଲଭ୍‌କୁ ଗଣ୍ଠିଲି କରି ଆସିଥିଲୁ ଆମ ଘରକୁ, ନ ହେଲେ ଏଇ ତିନିତିନିଟା ଛୁଆଙ୍କୁ ଜନ୍ମକରି ପାରି ନ ଥାଆନ୍ତୁ ? ଶେଷକୁ ମୁଁ ଦିନେ ତାକୁ କହିଲି, ଗୋଟାଏ ରୋକ୍‌ଠୋକ୍ ନିର୍ଣ୍ଣୟ ଶୁଣାଇଲା ପରି - ''ଶୁଣ, ମୁଁ ଯାଉଛି ଆଜି ପ୍ରଦୋଷ ବିଳାସକୁ । ଏବଂ ସେଇଠି ରହିବି । କେବେ ଫେରିବି କହିପାରୁ ନାହିଁ ।'' ଲୁହ ଜକେଇ ଆସିଲା ଲାବନୀର ଆଖିରେ । କିନ୍ତୁ ଉପାୟ ନାହିଁ । ସେ କ'ଣ ଜାଣେ ନାହିଁ ତା'ର ଜିଦିଆ, ହେଲେ ଚରିତ୍ରବାନ୍ ସ୍ୱାମୀ କେଉଁ ଧାତୁରେ ଗଢ଼ା ?

ସେଇଦିନଠୁଁ ମାସେ ହୋଇଗଲାଣି ଏଠିକି ଆସିବାର । ଲାବନୀ ସାଙ୍ଗରେ ଫୋନ୍‌ରେ କଥାଭାଷା ହୁଏ କେତେବେଳେ କେମିତି । କିନ୍ତୁ ଘରକୁ ଫେରିଆସିବାର କାରଣ ମିଳେ

ନାହିଁ ମୋତେ । କାହିଁକି ଫେରିଆସିବି ? ଜାଣନ୍ତୁ ପୁଅବୋହୂ, ଜାଣୁ ଲାବନୀ, ଯେ ମୁଁ ରୁଷିଛି ଏବଂ ତାଙ୍କ ମୁଣ୍ଡରେ ପଶୁ ମୁଁ ଯୋଉଥିପାଇଁ ରୁଷିଛି ।

କିନ୍ତୁ ଆଜି ସଞ୍ଜବେଳକୁ ଗଜେନ୍ଦ୍ରବାବୁ ଭାବିଲେ, 'ଦୃଶ୍ୟ' ଜନିତ ସମସ୍ତ ଭାବଭାବନାକୁ ନିଃଶେଷ କଲା ଉତ୍ତାରୁ, ଯେ ଘରୁ ଟିକିଏ ବୁଲି ଆସିଲେ ହେବ । ଲାବନୀକୁ କହିଲେ ହେବ ମୁଁ ଯାହା ଦେଖିଲି ଆଜି ।

ଆରେ, ମୁଁ ତା'କୁ କହିବି ନାହିଁ ତ ଆଉ କାହାକୁ କହିବି ? ଲଭ୍ ଫଭ୍‌କୁ ମାର ଗୋଲି, ସେ ହେଉଛି ମୋ ସ୍ତ୍ରୀ । ମୋ ପିଲାଛୁଆଙ୍କ ମାଆ । ଆଉ ସେଇ ଗୋଟିଏ ବୋଲି ମାଇକିନିଆ ମୋ ଜୀବନରେ । ମୁଁ ଜୋର୍ କରି କହିପାରିବି ସେକଥା, ଯାହା ପିଣ୍ଟୁ କିମ୍ବା ତା'ର ଉଚ୍ଚାଙ୍ଗ ବଡ଼ଲୋକି ସମାଜର କ୍ୱଚିତ୍ କିଏ କହିପାରିବ । ଆତ୍ମାନନ୍ଦର ହସଟିଏ ହସିଦେଲେ ଗଜେନ୍ଦ୍ରବାବୁ ଏବଂ ନିଶ୍ଚୟ କଲେ ଯେ ସେ ଘରକୁ ଯାଇ ବୁଲି ଆସିବେ ଟିକିଏ । ଖାସ୍ ଲାବନୀକୁ ଜଣାଇବା ପାଇଁ ତାଙ୍କ ଦୃଶ୍ୟଦେଖା ବିଷୟରେ, ତା'ର ପୂର୍ବାପର ସହ । ଅବଶ୍ୟ ପିଣ୍ଟୁ ବିଷୟରେ ସେ କିଛି ନ ଜାଣିଛି ନୁହେଁ, ମୁଇଁ ତାକୁ ଶୁଣେଇଛି ଅନେକ କଥା, ମଞ୍ଜୁରାଣୀଙ୍କ ବିଷୟରେ କିଛି ନ ଜାଣିଲେ ନାହିଁ ।

ସ୍ୱାମୀକୁ ହଠାତ୍ ଏମିତି ଆସି ପହୁଞ୍ଚିବାର ଦେଖି ଲାବନୀ ଯେମିତି ଉଚ୍ଛୁଳି ଉଠିଲେ ଆନନ୍ଦରେ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କିନ୍ତୁ ଅଭିଜ୍ଞ ସ୍ୱାମୀ ଗଜେନ୍ଦ୍ରବାବୁଙ୍କର ମନେହେଲା ଯେ ଇଏ କେବଳ ପୁନର୍ମିଳନର ଆନନ୍ଦ ନୁହେଁ, ତା' ପାଟି ଖଜବଜ ହେଉଛି ମୋତେ କ'ଣ କହିବ ବୋଲି । କ'ଣ ହେଲା ? କୋଉ ଖୋସାମତିଆ ପୁଣି କହିଛି କିଛି ତୋତେ ତୋର ଦେବୀତ୍ୱେହେରା କି ତୋର ଦେବତୁଲ୍ୟ ଗୁଣ ବିଷୟରେ ? ତୁ ତ ଯେମିତି ହୁଣ୍ଡୀଟିଏ, କଥା ପଦକରେ କିଣିହୋଇ ଯାଉ ....

ଯାହାହେଉ ଏମିତି ହେଲା ଯେ ସ୍ୱାମୀଙ୍କର ସ୍ନାନପ୍ରସାଧନ ସାରି ଚା' ଖାଇ ଦାଣ୍ଡଘର ସୋଫାରେ ବସିଲା ପରେ ଯେଉଁ ବିଶ୍ରମ୍ଭାଳାପ ଆରମ୍ଭ ହେବାକୁ ଥିଲା ଦି' ଜଣଙ୍କ ଭିତରେ, ତାହା ସୁରୁ ହେଲା ସ୍ତ୍ରୀ ଲାବନୀଙ୍କ ଆଡ଼ୁ । ଗଜିବାବୁ ଭାବିଚିନ୍ତି କଥାଟାକୁ ଆରମ୍ଭ କରିବା ପୂର୍ବରୁ । ଉଚ୍ଛୁଳା ଆନନ୍ଦକୁ ଧରି ରଖି ପାରୁ ନାହାନ୍ତି, ଏହି ଭାବରେ ସେ କହିଲେ, ଅଯଥାରେ ଫୁସ୍ ଫୁସ୍ ହୋଇ -

"ଜାଣିଛ ? ଗୋଟାଏ ବଡ଼ ସୁଖବର । ତମେ ନ ଆସିଥିଲେ ମୁଁ ତମକୁ ଫୋନ୍ କରି କହିଥାଆନ୍ତି । କିନ୍ତୁ କଥାଟା ଫୋନ୍‌ରେ କହିବାର ନୁହେଁ । ତମେ ଆସିଛ ଭଲ ହୋଇଛି ..."

ଅଳ୍ପ କେତୋଟି ମୁହୂର୍ତ୍ତର ବିରାମ । ସ୍ୱାମୀଙ୍କର କୌତୂହଳକୁ ଆହୁରି ଧାପେ ବଢ଼େଇଲା ପରି ।

"ଆମ ବୋହୂର ପିଲାପିଲି ହେବ । ଆଜି ଡାକ୍ତରାଣୀ ବିଶ୍ୱାଳ କହିଲେ ପରିଷ୍କାର ଭାବରେ, ସବୁ ପରୀକ୍ଷା ନିରୀକ୍ଷା ପରେ ।

"ଆଚ୍ଛା ? ଗୁଡ୍ !" ବାସ୍, ସେତିକି ମାତ୍ର । ଖବରଟା ଅବଶ୍ୟ ସୁଖବର ବୋଲି ଗଜେନ୍ଦ୍ରବାବୁ ମଧ୍ୟ ତାଙ୍କ ଓଠକୁ ପ୍ରସାରିତ କରିଥିଲେ । କିନ୍ତୁ ଆଉ କିଛି କହିବାକୁ ଚାହିଁଲେ ନାହିଁ । ଜାଣିଶୁଣି । ... ଭଲ କଥା । ବାହା ହୋଇଛ ଯେତେବେଳେ ପିଲାଟିଏ ଯଥାଶୀଘ୍ର ହେବା ଉଚିତ । ଏବଂ ତମ ବାପ ହିସାବରେ ମୁଁ ଅବଶ୍ୟ ଖୁସି ହେବି । କିନ୍ତୁ ମୁଁ ତମ ବୋଉଙ୍କର ଥେଇ ଥେଇ ଆନନ୍ଦରେ ଯୋଗ ଦେଇ ପାରିବି ନାହିଁ । ବାପର ନାଆଁ ଗଜେନ୍ଦ୍ର ଦାସ, ଯାହାର ଗୋଟାଏ ଆତ୍ମସମ୍ମାନ ଅଛି । ମୁଁ ତଥାପି ରୁଷିଛି ।

ସେଇଠୁଁ ଲାବନୀ ହଠାତ୍ ପଚାରିଲେ, "ତମେ ଆଜି ରାତିରେ ରହିବ ତ ଏଠି ?"

ଲାବନୀର ଏଇ ଆନନ୍ଦମୟୀ ରୂପକୁ ଦେଖିଲା ପରେ (ମନେହେଲା ଅନେକ ଦିନୁ ତା'ର ଏଇ ରୂପ ଦେଖିବାକୁ ମିଳି ନାହିଁ, ବୋଧହୁଏ ସତୁ ଘର ଛାଡ଼ି ଚାଲିଗଲା ପରେ) ସେହିପ୍ରକାର ଉଦ୍ଦେଶ୍ୟ ଗଜୁରି ଉଠୁଥିଲା ଗଜେନ୍ଦ୍ରବାବୁଙ୍କ ମନରେ । ହେଲେ ସେ ତାଙ୍କର ରୁଷିବା ଗୁଣକୁ ବଜାୟ ରଖିବା ଲାଗି ପଚାରିଲେ ତାଙ୍କୁ-

"କାହିଁକି ? କିଛି ଦରକାର ଅଛି ?"

ଲାବନୀ ତା'ର ଉତ୍ତର ଦେଲେ ନାହିଁ । ତେଣୁ ଗଜିବାବୁଙ୍କୁ ବୁଝିବାକୁ ପଡ଼ିଲା ଯେ ତା'ର ବି ଗୋଟାଏ ଆତ୍ମସମ୍ମାନ ଅଛି ବୋଲି ସେ ଜଣାଇବାକୁ ଚାହେଁ । ତେଣୁ ସେ କହିଲେ, "ହଉ । କହୁଛ ଯେତେବେଳେ ରହିଯିବି ଆଜି ରାତିଟା ।" ଏବଂ ଭାବିଲେ ଯେ ଶୋଇବା ଶେଯରେ ସେ ବି ଅନାୟାସରେ ଆରମ୍ଭ କରିବେ, ତାଙ୍କ ଆଡୁ ଯେଉଁ ମହା ଇଣ୍ଟରେଷ୍ଟିଙ୍ଗ୍ କଥାଟା କହିବାର ଅଛି ଲାବନୀକୁ ।

ହେଲେ ତାଙ୍କ ସରାଗରେ ବିଶେଷ ଦମ୍ଭ ନ ଥିଲା, ସେ ଯେତେବେଳେ କଥାଟାକୁ ଆରମ୍ଭ କରିବାକୁ ଲାଗିଲେ, ଯଥା ସମୟରେ । ମନେହେଲା କଥାଟା ସେମିତି କିଛି ଇଣ୍ଟରେଷ୍ଟିଙ୍ଗ୍ ଲାଗିବ ନାହିଁ ଲାବନୀକୁ । ଆଉ ସେ ବି 'ଆଇ-ସି !' ଜାତୀୟ କିଛି ଗୋଟାଏ ପ୍ରତିକ୍ରିୟା ଶୁଣେଇବ ସେଇ ରଜତ ରଥ ଲୋକଟା ପରି । ନୁଖୁରା ଓ ଭାବହୀନ ।

ଯାହାହେଉ ଗଜେନ୍ଦ୍ରବାବୁ ନିଜକୁ ସଜାଡ଼ିବାକୁ ବେଳ ପାଇଲେ ନାହିଁ । କାରଣ ସେ ଦେଖିଲେ ଲାବନୀ ତାଙ୍କ ପାଖକୁ ଘୁଞ୍ଚି ଆସି ଗେହ୍ଲେଇ ହେଲା ପରି ହେଉଛି, ପୁଣି କିଛି କହିବ କି କଅଣ । ସେଇଠୁଁ -

"ବୋହୂ କ'ଣ କହୁଛି ଜାଣ ? କହୁଛି ବାପା ଆଉ ମୋଟେ ଯିବେ ନାହିଁ କୋଉ ବିଳାସକୁ କି ହୋଟେଲ୍‌କୁ । ଏଇଠି ରହିଥିବେ ସବୁଦିନେ, ଅନ୍ତତଃ ପିଲାଟି ଜନ୍ମ ହେବା ଯାଏଁ..."

''କାହିଁକି ? ତା'ର ସେବା କରିବା ଲାଗି ?'' କଣ୍ଠରେ ତାଚ୍ଛଲ୍ୟ ଭାବ ।

''ଧ୍ୟାତ୍ ! ତା' ନୁହେଁ । ସେ ଚାହେଁ ତମେ ରହିଥିବ ଏଇଠି, ତା' ପିଲା ଯେତେବେଳେ ବଢୁଥିବ ତା' ପେଟରେ । କାରଣ ସେ କେବଳ ତା'ର ପୁଅ କି ଝିଅ ହୋଇ ଜନ୍ମ ହେବ ନାହିଁ, ସେ ହେବ ଏଇ ବଂଶର ପିଲା । ଆଉ ମାଆ ପେଟରେ ଥାଉଁ ଥାଉଁ ତା' ଶିରାଧମନୀରେ ଚହଟିଯିବ ଏଇ ବଂଶର ବଡ଼ପଣ । ତା' ଜେଜେବାପା ଓ ଜେଜେମା'ଙ୍କ ଆଶୀର୍ବାଦକୁ ନେଇ । କିନ୍ତୁ ପାଖରେ ଥାଇ । ଯେମିତିକି ସେ ଶୁଣିପାରିବ ତୋ-ଆମ କଥା । ଆଉ ଆମର ଛାଇ ପଡ଼ିବ ତା' ଉପରେ । କହିଲା, ସେ ହେବ ଆରକ ଅଭିମନ୍ୟୁ । କମ୍‌ଟିଏ କି ତମ ବୋହୂ !''

''ସତରେ ? ଏଇଆ କହିଲା ସେ ?'' ଗଜେନ୍ଦ୍ରବାବୁ ଉଠି ବସିଲାପରି ହେଲେ, ଏବଂ ଦୋହରେଇଲେ, ''ଠିକ୍ ଏଇଆ କହିଲା ସେ ? ଯେ ସିଏ ହେଉଛି ଏଇ ବଂଶର ପିଲା, ଆଉ ଏଇ ବଂଶର ବଡ଼ପଣ...''

...ମୂର୍ଖ ଗଜେନ୍ଦ୍ର ! ତୁ କ'ଣ ଭାବିଥିଲୁ ଯେ ତୋ ବଂଶରେ ବଡ଼ପଣ ନାହିଁ, ନା ଏଇ ଖାନ୍‌ଦାନି ଜିନିଷଟା ଆପେ ଆପେ ଗଢ଼ି ଉଠିପାରିବ ନାହିଁ, ହୁଏତ ଏଇ ତୃତୀୟ ପିଢ଼ିର ଅଭିମନ୍ୟୁଠାରୁ ଆରମ୍ଭ କରି ? ...

ଉଲ୍ଲସିତ ହୋଇ ଉଠିଥିବା ଗଜେନ୍ଦ୍ରବାବୁ କିପରି ଭାବରେ ନିଜକୁ ବ୍ୟକ୍ତ କରିବେ ଭାବି ପାରିଲେ ନାହିଁ । ଭାବିଲେ ଲାବନୀ ତା'ର ଭେଦ ବୁଝିପାରିବ ନାହିଁ, ମୁଁ ଯାହା କହିବି । ସେଇଠୁଁ ସେ ଗୋଟିଏ ବିଚିତ୍ର କାମ କରିବାକୁ ଲାଗିଲେ । ସେ ଲାବନୀଙ୍କ ଆଡ଼କୁ ମୁହଁ କରି ଶୋଇଲେ, ଏବଂ ତାଙ୍କ ଦେହରେ ହାତ ପକେଇଲେ । ତହୁଁ ତାକୁ ଆଉଁଶିବାକୁ ଲାଗିଲେ ।

ଲାବନୀଙ୍କୁ ଅଜବ ଲାଗିଲା ସ୍ୱାମୀଙ୍କର ଏଇ କାରବାର । କାହିଁକିନା ସେ କେବେହେଲେ ଏମିତି କିଛି ସୋଗ ଦେଖେଇଛନ୍ତି ତାଙ୍କୁ, ବୋଲି ତାଙ୍କର ମନେପଡ଼ିଲା ନାହିଁ । ରତିକ୍ରିୟାର ପୂର୍ବରୁ କିମ୍ବା ପରେ, କିମ୍ବା ଆଉ କେତେବେଳେ । କ'ଣ ହୋଇଛି ବାବୁଙ୍କର ? ହେଲେ ମୋତେ ଭଲ ଲାଗୁଛି, ଏଇ ଭାବରେ ସେ ତାଙ୍କ ହାତକୁ ନିଜ ହାତରେ ଅଟକେଇ ରଖୁଥିଲେ ମଝିର୍ ମଝିରେ, ସ୍ପର୍ଶର ଅନୁଭବକୁ ଆହୁରି ଗହୀରରେ ପାଇଲା ପରି ।

ଏଣେ ଗଜେନ୍ଦ୍ରବାବୁ ଡାବି ଚାଲିଥାଆନ୍ତି ଲାବନୀଙ୍କୁ ଆଉଁଶିବାର କ୍ରମରେ - ହଁ, ଖାନ୍‌ଦାନି ଗଢ଼ି ଉଠିବ । ମୋ ନାତି କି ନାତୁଣୀର ଚେତନାରେ । ତା' ଜନ୍ମହେଲା ପୂର୍ବରୁ । ଆଉ ସେ ଜନ୍ମହେଲା ପରେ ମୁଁ ତା'କୁ କିଭଳି ପାଠ ପଢ଼େଇବି ମୋ ହିସାବରେ, ଯେଉଁଥିରେ ସେଇ ଖାନ୍‌ଦାନି-ବଡ଼େଇ ଗଜୁରି ଉଠିବ ତା' ମନରେ,

ତହୁଁ ବଢ଼ି ବଢ଼ି ଯିବ, ଆଉ ଶାଖାର ଶାଖା ମେଲାଇବ, ତା' ଦେଖିବ ସମସ୍ତେ ।' ନା, ମୁଁ ଆଉ ମୋଟେ ଗୋଡ଼ ବଢ଼େଇବି ନାହିଁ ଆଉ କୋଉଠି ଯାଇ ରହିବି ବୋଲି । ଯିବା ଦରକାର କେଉଁ ବୋଲି ବଡ଼ଲୋକିଆ 'ବିଳାସ'କୁ ସେମାନଙ୍କର ସୁଆଙ୍ଗ ଦେଖିବା ପାଇଁ ।

ବାକି ରହିଲା କଲ୍‌ଚର୍ । ମୁଁ ସିନା ପାରିଲି ନାହିଁ, କି ମୋ ପୁଅଝିଅଙ୍କର ବିଶେଷ ମନହେଲା ନାହିଁ ସେଆଡ଼କୁ, ପାରିବ ଏଇ ଅଭିମନ୍ୟୁ । ହୁଏତ ମିସ୍ ଅଭିମନ୍ୟୁ । ମୋର ଯଥେଷ୍ଟ ଟଙ୍କା ଅଛି ସେଥିପାଇଁ । ପିଣ୍ଟୁ ପରି ମୁଁ ତାକୁ ଖେଳେଇ ଦେଇ ନାହିଁ ଏଣୁତେଣୁ କାରବାରରେ । ଯାହା ଗଚ୍ଛିତ ଧନ ଅଛି ମୋ ପାଖରେ, ତାକୁ କେବଳ ମୁଁ ଜାଣେ । ଆଉ କିଛିଟା ଜାଣନ୍ତି ଇନ୍‌କମ୍‌ଟ୍ୟାକ୍ସବାଲା । ସେଇଥିରେ ମୁଁ ଯେତେକ ଫେସନିଆ ବଡ଼ଲୋକି କଲ୍‌ଚର୍ ଯୋଗେଇ ଦେବି ତାକୁ । ତାକୁ ମୁଁ ବିଲାତ ପଠେଇବି । ନାଇଁ ନାଇଁ, ବିଲାତ ନୁହେଁ । ବିଲାତଟା ପୁରୁଣାକାଳିଆ ହୋଇଗଲାଣି । ତାକୁ ଆମେରିକା ପଠେଇବି । ସେଇ ହେଉଛି ସ୍ୱର୍ଗପୁରୀ, ଆଜିକାଲିକା ପିଲାଙ୍କ ପାଇଁ । ହାର୍‌ଭାର୍ଡ୍, ଗ୍ରିନ୍‌ସଟନ୍, ଏମିତି କେତେସବୁ ବଡ଼ ବଡ଼ ୟୁନିଭର୍ସିଟିର ନାଆଁ ପଡ଼ିଛି ମୋ କାନରେ । ନ ହେଲେ ପଚାରିବି ଠିକଣା ଲୋକମାନଙ୍କୁ । ଆଉ ଆମ ଅଭିମନ୍ୟୁ ଯେତେବେଳେ ଫେରିବ ନା ସେଠୁଁ, ଦେଖିବ ତା' ଗୁଣ, ଦେଖିବ ତା' ଠାଣି....

କେତେବେଳେ ତାଙ୍କର ଖିଆଲ ହେଲା ଯେ ସେ ଯେଉଁ କାମଟା କରୁଛନ୍ତି ଏଇକ୍ଷଣି, ଏଇ ଦେହକୁ ଆଉଁଶିବାର ପ୍ରକ୍ରିୟା, ଠିକ୍ ସେଇ ଦୃଶ୍ୟଟାକୁ ସେ ଦେଖି ଆସିଛନ୍ତି ଆଜି ସକାଳେ । ତେଣୁ ମନେହେବ ସେ ତାକୁ ନକଲ କରୁଛନ୍ତି ! ସେଇଠୁଁ ସେ ହସି ଉଠିଲେ ଲାବନୀଙ୍କୁ ଚମକେଇ ଦେଇ ଏବଂ କହିଲେ ନିଜକୁ - କିନ୍ତୁ ମୁଁ କୋଉ ଖରାପ କାମ କରୁ ନାହିଁ । ମୁଁ ଯାହା କରୁଛି, ମୋ ନିଜ ସ୍ତ୍ରୀକୁ ନେଇ ଏବଂ ଏକାନ୍ତରେ । କାହିଁକିନା ମୋର ମନ ହେଲା ସେମିତି ଏବଂ ମୁଁ ସେମିତି କିଛି ବୁଢ଼ା ହୋଇ ନାହିଁ । ମୁଁ ମଧ୍ୟ ପେରେମ କରିପାରିବି । ହେଲେ ସେଥିରେ ଅଛି କାରାକ୍ଟର୍ !

ଏଇ ପ୍ରେମର ଭାଷା କେତେଦୂର ପହଞ୍ଚିଲା ଲାବନୀଙ୍କ ପାଖରେ, ଭଗବାନ୍ ଜାଣନ୍ତି । କିନ୍ତୁ ସେ ବି ଗୋଟାଏ ବିଚିତ୍ର କାମ କଲେ, ତା'ର ଅଙ୍ଗୀକାର ସ୍ୱରୂପ । ଯେଉଁଥିରେ ଗଜେନ୍ଦ୍ରବାବୁଙ୍କର ଆସନ ଟଳିଗଲା ଜାଣ । ପୂରାପୂରି ଟଳିଗଲା । କାରଣ ଲାବନୀ ତାଙ୍କ ଓଠରେ ଚୁମାଟିଏ ଦେଲେ । ଯାହା ହୁଏତ ସେ କରିଥିଲେ କେଉଁ ଯୁଗରେ, ବାହାଘର ପରେ ପରେ ।

ତା'ପରେ ସେମାନେ କିପରି ଭାବରେ ଏବଂ କେତେଦୂର ଆଗେଇ ଯାଇଥିବେ, ଏଇ ନବଜାଗୃତିକୁ ଚରିତାର୍ଥ କରିବା ଦିଗରେ, ତା' ସେଇ ଜାଣନ୍ତି ।

# ଦୃଶ୍ୟର ସତ ମିଛ

ବର୍ତ୍ତମାନ କିଛି କହିବାକୁ ପଡ଼ିବ ଦୃଶ୍ୟର ସତ ମିଛ ବିଷୟରେ । ଯେଉଁ ଦୃଶ୍ୟ ବିଭିନ୍ନ ବ୍ୟକ୍ତିମାନଙ୍କୁ ବିଭିନ୍ନ ତଥା ଅସାମାନ୍ୟ ଭାବରେ ପ୍ରଭାବିତ କଲା । ଯେଉଁଥିପାଇଁ ମନେହୁଏ ଯେ ସେମାନଙ୍କ ନିଜ ନିଜ ଜୀବନରେ କେଉଁ ଶେଷ ଅଙ୍କର ଦିଶିଗଲା ପରା !

କିନ୍ତୁ ଯାହା ଦେଖିଲେ ସେମାନେ ତା' କ'ଣ ପ୍ରକୃତରେ ସେଇଆ, ଏକ ଅନନ୍ୟ ଉପଚାର ? ତଥା ଏତେ ପ୍ରବଳ ଏବଂ ଦୁର୍ନିବାର ଯେ ତା'କୁ ଦୁନିଆ ଦେଖିଲେ ଦେଖୁ ବୋଲି ସେମାନେ ପରୁଆ କଲେ ନାହିଁ ? ନା ତା' ନୁହେଁ । ସେ ଦୁଇ ବୁଢ଼ା ବୁଢ଼ୀ, ସୁବିଦିତ କବି ଜଗଦ୍‌କୃଷ୍ଣ ପଣ୍ଡା ଓ ବିଶିଷ୍ଟ ସଂସ୍କୃତିପ୍ରେମୀ ବଡ଼ଲୋକ ପିଣ୍ଟୁ ମହାପାତ୍ରଙ୍କ ବିଧବା ମଞ୍ଜୁ ମହାପାତ୍ର ପରସ୍ପରକୁ ପ୍ରେମ କରୁ ନ ଥିଲେ । ପୂର୍ଣ୍ଣଚ୍ଛେଦ ।

ଏଁ ? ପ୍ରେମ କରୁ ନ ଥିଲେ ? ମାନେ ତା'ଠୁ ହାଲୁକା ? କେବଳ ଅନୁରାଗ, ସଂପ୍ରୀତି, ସ୍ନେହଶ୍ରଦ୍ଧା ଇତ୍ୟାଦିର ପରିଚାୟକ ଥିଲା ସେହି ହାତ ଆଉଁଶାର କ୍ରମ, ହେଲେ ସେଥିରେ ସେମାନେ ଏମିତି ମଜ୍ଜିଯାଇଥିଲେ, ନିମୀଳିତ ଚକ୍ଷୁ ସମେତ, ଯେ ଦର୍ଶକମାନେ ସେଥିରେ ଠକି ହୋଇ ଗଲେ ? ତା'କୁ କେଉଁ ଏକ ମହା (ହୁଏତ ହାସ୍ୟାସ୍ପଦ) ପ୍ରେମଲୀଳା ବୋଲି ଭାବିଲେ ?

ନାଇଁ ଆଜ୍ଞା, ତା' ବି ନୁହେଁ । ଅବଶ୍ୟ ସେମାନେ ପ୍ରେମ କରୁଥିଲେ । କିନ୍ତୁ ପରସ୍ପରକୁ ନୁହେଁ । ରହସ୍ୟ ଏହି ପ୍ରକାର -

କର୍ତ୍ତା, ଅର୍ଥାତ୍ କବି ଜଗଦ୍‌କୃଷ୍ଣ ପଣ୍ଡା ଆପଣା ପତ୍ନୀଙ୍କୁ ଝୁରୁଥିଲେ ସେଇ ଅନନ୍ୟ ସୁନ୍ଦର ପ୍ରକ୍ରିୟା ଦ୍ୱାରା, ଯାହା ଗଢ଼ି ହୋଇଗଲା ଆପେ ଆପେ । ଅର୍ଥାତ୍ ସେ ଅନ୍ୟମନସ୍କ ଭାବରେ କରୁଥିଲେ ଏଇ କାମଟାକୁ; ମନ ଥିଲା ସ୍ୱର୍ଗୀୟା ପତ୍ନୀଙ୍କ ପାଖରେ । ତେବେ ବୟାଅଶୀ ବର୍ଷ ବୟସର ବୃଦ୍ଧଙ୍କ ଦୃଷ୍ଟିଶକ୍ତି ଅନେକ କମି ଆସିଥିଲା, ଏବଂ କବିମାନେ ସହଜେ କଳ୍ପନା ବିଳାସୀ, ଏଇ ଦୁଇଟି ବ୍ୟକ୍ତିଗତ ତଥ୍ୟକୁ ମଧ୍ୟ ଦାୟୀ କରିବାକୁ ପଡ଼ିବ ତାଙ୍କର ଏଇ ଅନ୍ୟମନସ୍କତା ପାଇଁ ।

ବେଶ୍ । କିନ୍ତୁ ମଞ୍ଜୁ ମହାପାତ୍ର ? ସେ ଏଇ ହାତ ଆଉଁଶାକୁ ଏମିତି ପିଇଯାଉଥିଲେ କାହିଁକି, ଯଦି ସେଥିରେ ପ୍ରେମପ୍ରେମ କିଛି ନ ଥିଲା ? ହାତଟାକୁ ଛଡ଼େଇ ଆଣି ପାରିଲେ ନାହିଁ ? ଅନ୍ତତଃ ଘୁଞ୍ଚେଇ ଆଣିପାରିଲେ ନାହିଁ, ଯଦି ସେ ବୃଦ୍ଧ କବିଙ୍କ ମନରେ କଷ୍ଟ ଦେବାକୁ ଚାହୁଁ ନ ଥିଲେ ? ଅପରନ୍ତୁ କାହିଁକି ଦର୍ଶକମାନଙ୍କ ମନକୁ ଆସିଲା ଯେ ସେ ତାକୁ ଦିବ୍ୟ ଉପଭୋଗ କରୁଛନ୍ତି ?

ହଁ, ସେ ସେତିକି ନିଶ୍ଚୟ କରିପାରିଥାଆନ୍ତେ । କିନ୍ତୁ କଲେ ନାହିଁ, ତା'ର କାରଣ ହେଉଛି ଯେ ସେଥିରେ ଏକ ପ୍ରାପ୍ତିର ଅବବୋଧ ଥିଲା । ତାକୁ ସୁଖକର ବୋଲି ଅବଶ୍ୟ କହିବାକୁ ହେବ । କିନ୍ତୁ ତାକୁ କ'ଣ ସତେ ପ୍ରେମ, ଅର୍ଥାତ୍ ପ୍ରେମ ବୋଇଲେ ଆମେ ଯାହା ବୁଝୁ ସାଧାରଣ ଅର୍ଥରେ, ସେଇ ପର୍ଯ୍ୟାୟରେ ରଖିହେବ ? କେଜାଣି । କାରଣ ମଞ୍ଜୁଙ୍କ ମାନସିକତା ଅନୁଯାୟୀ ତାହା ଥିଲା ଅପାର୍ଥିବ ପ୍ରେମ । ଯାହାକୁ ସ୍ୱର୍ଗୀୟ ବୋଲି କୁହାଯାଇପାରେ । ଯେଉଁଥିରେ ଯୌନତା କି ସ୍ଥୂଳତାର ନାଆଁଗନ୍ଧ ନାହିଁ । ଅନ୍ୟ ଅର୍ଥରେ ତାହା ଥିଲା ଏକ ସ୍ୱପ୍ନଲଭ୍ୟ ଆଦର୍ଶର ଅନୁଭବ । ଅପ୍ରତ୍ୟାଶିତ ଅନୁଭବ । ସେଇଲାଗି ସେ ତାକୁ ଆଖି ବୁଜି ପିଇଗଲା ପରି ମନେ ହେଉଥିଲା । ଏହି ପରିପ୍ରେକ୍ଷୀରେ ସ୍ମରଣଯୋଗ୍ୟ ମଞ୍ଜୁ ଯାହା କହିଥିଲେ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଉର୍ମିଳାକୁ ବିବାହର କେତୋଟି ବର୍ଷ ପରେ, ସଂଗିନୀର ଏକ ପ୍ରଶ୍ନର ଉତ୍ତର ଦେଇ - ''ହଁ, ମୁଁ ତାଙ୍କୁ ନିଶ୍ଚୟ ଭଲପାଏ । ପିଣ୍ଟୁ ମହାପାତ୍ରଙ୍କ ପରି ଜଣେ ଧନୀ ତଥା ରୂପଗୁଣ ସଂପନ୍ନ ବ୍ୟକ୍ତିଙ୍କୁ କିଏ ଭଲା ଭଲ ନ ପାଇବ ? କିନ୍ତୁ ତୋର ପ୍ରଶ୍ନ ଠିକ୍ ତା' ନ ଥିଲା । ତୁ ମୋତେ ପଚାରିଲୁ ଯେ ମୁଁ ମୋର ସ୍ୱପ୍ନର ମଣିଷଟିକୁ ପାଇଛି କି ନାହିଁ । ତା'ର ଉତ୍ତରରେ ମୁଁ କହିବାକୁ ବାଧ ହେଉଛି - ସରି, ରଙ୍ଗ୍ ନମ୍ବର୍ !' ଆଲୋ ହୁଣ୍ଡୀ, ତୁ କ'ଣ ଭୁଲିଗଲୁଣି ମୁଁ ଯାହା କହିଥିଲି ତୋତେ ମୋର ଗୋଟିଏ ସତସତିକା ସ୍ୱପ୍ନ ବିଷୟରେ ? ସେଇ ସ୍ୱପ୍ନରେ ଯେଉଁ ଜଣେ ଆବିର୍ଭୂତ ହୋଇଥିଲେ, ସେଇ ପରମପୁରୁଷ, ସେ ଥିଲେ ଜଣେ ସନ୍ନ୍ୟାସୀ । ବୁଝିଲୁ ଏଥର ?'' ହୁଣ୍ଡୀ ତଥାପି ସେଥିରୁ କ'ଣ ବୁଝିଲା ଭଗବାନ୍‌ଙ୍କୁ ଜଣା, କିନ୍ତୁ ଆମକୁ ସେଇ ସୁଦୂର ଅତୀତର ଭାବଦଗ୍ଧ ବାର୍ତ୍ତାଳାପକୁ ନେଇ ବୁଝିବାକୁ ପଡ଼ିବ ଯେ ସେମିତି କିଛି ଥିଲା ତାଙ୍କ ପାଇଁ ଆଜିକାର ଏଇ ଅନୁଭବ, ଏଇ ପ୍ରାପ୍ତିର ଅବବୋଧ । ଏଇ ହାତ ଆଉଁଶା କେଉଁ ସନ୍ନ୍ୟାସୀର ନ ଥିଲା, କିନ୍ତୁ ତାଙ୍କର ଜଣେ ଫେଭରିଟ୍ କବିଙ୍କର ଥିଲା ତ ? ଆଉ କବି-କଳାକାରମାନେ କ'ଣ ସନ୍ନ୍ୟାସୀମାନଙ୍କ ପାଖାପାଖି ନୁହନ୍ତି ? ବର୍ତ୍ତମାନ ଠିକ୍ କରନ୍ତୁ, ଯାକୁ ପ୍ରେମ ବୋଲି କହବା ଉଚିତ ହେବ କି ନାହିଁ ।

ବର୍ତ୍ତମାନ ଏଇ ପ୍ରକ୍ରିୟାର ବ୍ୟାଖ୍ୟାବିନ୍ୟାସ କରିବାକୁ ପଡ଼ିବ, ରହସ୍ୟକୁ ଆହୁରି ଟିକିଏ ଭଲ ଭାବରେ ବୁଝିବାପାଇଁ । ପ୍ରଥମେ କବିଙ୍କ ଅନ୍ୟମନସ୍କତା । ବୁଢ଼ା ହେବାରୁ ସେ ଏମିତି ଅନ୍ୟମନସ୍କ ହୋଇ ପଡ଼ିଥିଲେ ସିନା, କିନ୍ତୁ ମନେରଖିବାକୁ ହେବ ଯେ ସେ ତାଙ୍କ ପତ୍ନୀଙ୍କୁ ଝୁରୁଥିଲେ ବୋଲି ନିଜକୁ ଆୟତ୍ତରେ ରଖିପାରିଲେ ନାହିଁ । ତା'ମାନେ ସେ କ'ଣ ତାଙ୍କ ସ୍ୱର୍ଗୀୟା ପତ୍ନୀ ସରମାଙ୍କୁ ଏତେ ଭଲ ପାଉଥିଲେ ? ମଲା, ଏଥିରେ ପଚାରିବାର କ'ଣ ଅଛି ? କବିମାନେ ତାଙ୍କ ସ୍ତ୍ରୀଙ୍କୁ ଭଲ ପାଇବେ ନାହିଁ ତ ଆଉ କାହାଠାରୁ ସେହିପ୍ରକାର ଭାବାବେଗ ଆଶା କରିବା ? ସମାଜର ମୂଳିଆ, କିରାଣି, ହାକିମ, କିଁ

ନେତାଙ୍କଠାରୁ ? ହଁ, କବି ଜଗଦ୍‌କୃଷ୍ଣ ପଣ୍ଡା ତାଙ୍କ ଷାଠିଏ ବର୍ଷ ତଳର ପତ୍ନୀଙ୍କୁ ଅବଶ୍ୟ ଭଲ ପାଉଥିଲେ, ଏବଂ ବର୍ତ୍ତମାନ ମଧ ଭଲ ପାଆନ୍ତି ତାଙ୍କର ସ୍ମୃତିକୁ । ସେହେତୁ ଏଇ ଝୁରିବା ।

ହେଲେ ଏଇ ବିରହ, ଏଇ ଝୁରିବାର ତୀବ୍ରତାରେ ଆହୁରି ଗୋଟାଏ ଉପାଦାନ ଥିଲା । ତାହା ହେଉଛି ଆତ୍ମଗ୍ଲାନି । ଏକ ଦୁର୍ବିଷହ ଆତ୍ମଗ୍ଲାନି । କାରଣ ସେ ତାଙ୍କ ପତ୍ନୀଙ୍କୁ ପିଟିଥିଲେ ତାଙ୍କ ମୃତ୍ୟୁର ପ୍ରାୟ ମାସକ ପୂର୍ବରୁ ।

ଏଁ ? କବି ଜଗଦ୍‌କୃଷ୍ଣ ତାଙ୍କ ପତ୍ନୀଙ୍କୁ ପିଟିଥିଲେ ତାଙ୍କୁ ଏତେ ଭଲପାଇବା ସତ୍ତ୍ୱେ ? କଥାଟା ବିଶ୍ୱାସଯୋଗ୍ୟ ନୁହେଁ । ମାନୁଛି । କିନ୍ତୁ କଥାଟା ଏତେ ମାରାତ୍ମକ ନୁହେଁ, ଯାହା ଭାବୁଥିବେ ଆପଣ । ଇଏ କୋଉ ମୂର୍ଖ ଓ ମାତାଲ ସ୍ୱାମୀର ପ୍ରହାର ନୁହେଁ, ଯା ନିତ୍ୟ ପ୍ରତ୍ୟହ ଘଟିଥାଏ ଗୋଟାଏ ଧରଣର ସ୍ୱାମୀ-ସ୍ତ୍ରୀଙ୍କ ଭିତରେ । ଇଏ ଥିଲା ମୁହୂର୍ତ୍ତର ଘଟଣା, ଯେତେବେଳେ ବୃଦ୍ଧ କବିଙ୍କର ଧୈର୍ଯ୍ୟ ତୁଟିଗଲା । 'ସର ମୋତେ ବୁଝୁ ନାହିଁ !' ଏଇ ଅଭିଯୋଗ ହଠାତ୍ ଏକ ଭୀମରୂପ ଧାରଣ କଲା, ଏବଂ ସେ ନିଜକୁ ସମ୍ଭାଳି ପାରିଲେ ନାହିଁ । ସେଇଠୁଁ ପାହାରେ ପିଟିଲେ ତାଙ୍କୁ, ତାଙ୍କ ହାତରେ ଧରା ହୋଇଥିବା କବିତା ଖାତାରେ । ସେଇ ପ୍ରଥମ, ଏବଂ ସେଇ ଶେଷ । ଏଭଳି ଘଟଣା କେବେହେଲେ ଘଟି ନ ଥିଲା ଏଥି ପୂର୍ବରୁ, କିମ୍ବା ଘଟି ନାହିଁ ଏହାପରେ । ଜଗଦ୍‌କୃଷ୍ଣ ମଧ 'ଆଇ ଆମ୍ ସରି !' ବୋଲି କହି କ୍ଷମା ମାଗିଥିଲେ ସରମାଙ୍କ ଠାରୁ । ଥରେ ନୁହେଁ, ଦି' ତିନିଥର । କିନ୍ତୁ ଦୁଃଖର ବିଷୟ ସମୟ ମିଳିଲା ନାହିଁ ରାଗରୁଷାକୁ ଉଝେଇବା ପାଇଁ । ସରମା ହଠାତ୍ ଚାଲିଗଲେ । ସେହେତୁ ଅନୁତପ୍ତ ସ୍ୱାମୀ ତାଙ୍କର ଏକ ବହୁଦିନର ପ୍ରେମ ଉପଚାରକୁ ଫେରାଇ ଆଣି ପାରିଲେ ନାହିଁ । ଉପରୋକ୍ତ ଘଟଣା ପରେ ସେ ଯେତେଥର ସରମାଙ୍କ ହାତକୁ ଆଉଁଶିବାକୁ ଯାଆନ୍ତି, ଅଭିମାନିନୀ ତାଙ୍କ ହାତକୁ ଘୁଞ୍ଚେଇ ନିଅନ୍ତି । ହେଲେ ତାଙ୍କର ଆଶା ଥିଲା ଯେ ଦିନ ଆସିବ ଯେତେବେଳେ ସରମା ସେଥିକୁ ବାଧା ଦେବ ନାହିଁ । କିନ୍ତୁ ତା' ସମ୍ଭବ ହେଲା ନାହିଁ । ତା' ପୂର୍ବରୁ ସରମା ଆଖି ବୁଜିଦେଲେ । ଅବଶ୍ୟ ଶେଷ କେତୋଟି ମୁହୂର୍ତ୍ତରେ ପତ୍ନୀଙ୍କର ଅସାଡ଼ ଅସହାୟ ହାତ ପଡ଼ି ରହିଥିଲା ତାଙ୍କ ହାତରେ, ଏବଂ ସେ ତାକୁ ଆଉଁଶୁଥିଲେ । କିନ୍ତୁ ତାହା ଅଦୃଷ୍ଟର ଏକ ନିର୍ମମ ଉପହାସ ହୋଇ ରହିଗଲା !

ସେହେତୁ ଏଇ ଗଭୀର ଅନୁତାପ ଯାହାକୁ ସେ ସମାହିତ କରିପାରି ନ ଥିଲେ ଆଜିଯାଏଁ । ଏବଂ ସେଦିନ କ'ଣ ହେଲା ନା କେଉଁ ଜଣେ ଫ୍ୟାନ୍, ସଞ୍ଜୁ ନା ମଞ୍ଜୁର ଆସିବାର ଥିଲା ତାଙ୍କ ପାଖକୁ । କିନ୍ତୁ ତା' ପୂର୍ବରୁ ସରର ଚେହେରା ଜୀବନ୍ତ ହୋଇ ଉଠିଥିଲା ତାଙ୍କ ମାନସପଟରେ, ଆତ୍ମଗ୍ଲାନି ସମେତ । ତେଣୁ ମାନଭଞ୍ଜନର ଆତୁରତା -

ସେ କ୍ଷଣକ ପାଇଁ ଆସନ୍ତା ନାହିଁ, ଯେମିତିକି ମୁଁ ତାକୁ କହିପାରନ୍ତି ମୋ ଭାବରେ, ଯେ ଆମ ଭିତରେ ଯେଉଁ ଭଲ ପାଇବା ଅଛି, ଅସାଧାରଣ (କବିସୁଲଭ) ଭଲ ପାଇବା, ତା' ତିଳେ ହେଲେ ଊଣା ହୋଇ ନାହିଁ ?

ଏଇ ସମୟରେ ଆସି ପହୁଞ୍ଚିଲେ ମଞ୍ଜୁ ମହାପାତ୍ର । ଏବଂ ସୋଫାରେ ଆସି ବସିଲେ ତାଙ୍କ ପାଖରେ, ବିନମ୍ର ନମସ୍କାରଟିଏ କରିସାରିଲା ପରେ । ତଥା ପାଖରେ ଆସି ବସିବାର ଇସାରା ପାଇଲା ପରେ । କବି ସେତେବେଳଯାଏଁ ଫେରି ଆସି ନ ଥାନ୍ତି ଆତ୍ମଗ୍ଲାନି ମୂଳକ କଳ୍ପନାରୁ । ଏବଂ ସେତେବେଳେ ତାଙ୍କ ଆଖିରେ ପଡ଼ିଲା ପାର୍ଶ୍ୱସ୍ଥିତ ଏକ ପୁଷ୍ଟ ପେଲବ ହାତର ପାପୁଲି । ଅବିକଳ ତା'ରି ପରି । ସତେକି ସେଇ ଆସି ପହୁଞ୍ଚି ଯାଇଛି ତାଙ୍କ ଡାକରା ଶୁଣି ! ସେଇଠୁଁ ତାଙ୍କର ହାତଟିଏ ଆପେ ଆପେ ପ୍ରସାରିତ ହେଲା ତା'କୁ ଆଉଁଶିବା ପାଇଁ । ଏବଂ ସେଇ କଳ୍ପନାଗତ ଭ୍ରମାତ୍ମକ ସୁଖରୁ ସେ ଉଠିଆସି ପାରିଲେ ନାହିଁ କିଛି ସମୟ ଯାଏଁ । ଅଳ୍ପ କେତୋଟି ମୁହୂର୍ତ୍ତ । ହେଲେ ତା'ରି ଭିତରେ ତିନିଜଣଙ୍କର ଯିବାକୁ ଥିଲା ସାମ୍ନା କରିଡ଼ର୍ ଦେଇ । ଏବଂ ଝରକାକବାଟ ଖୋଲା ଥିଲା । ତେଣୁ ସେମାନେ ସେଇ 'ଦୃଶ୍ୟ'ଟିକୁ ନ ଦେଖି ରହି ପାରିଲେ ନାହିଁ । ବିଧିର ବିଡ଼ମ୍ବନା ଛଡ଼ା ଏହାକୁ ଆଉ କ'ଣ କୁହାଯାଇପାରେ ?

ହେଲା ଯେ, କିନ୍ତୁ 'ସର ମୋତେ ବୁଝୁ ନାହିଁ !' ଏହି ମର୍ମରେ ସେ ଯେଉଁ ପାହାରେ ପକେଇଲେ ତାଙ୍କ ସ୍ତ୍ରୀଙ୍କୁ, ତାହା ଯେତେ ସୀମିତ, ସାମୟିକ, ଏବଂ ଏକକାଳୀନ ହେଉ ନା କାହିଁକି, ସେଥିପାଇଁ କ'ଣ କୌଣସି ସଫେଇର ଆବଶ୍ୟକତା ନାହିଁ ? ନା କବିମାନଙ୍କୁ ସାତଖୁଣ ମାଫ୍ ? ନା, ତା' ନୁହେଁ ଯେ... ହଉ ଶୁଣନ୍ତୁ ତା' ହେଲେ କବିଙ୍କ ଜୀବନଚରିତ, ସଂକ୍ଷେପରେ ।

ଭାବିବାକୁ ପଡ଼େ ଯେ ଜଗଦ୍‌କୃଷ୍ଣ ପଣ୍ଡା କ'ଣ ହୋଇଥାଆନ୍ତେ ତାଙ୍କ ଜୀବନରେ, କବିଟିଏ ନ ହୋଇଥିଲେ । ହଁ, ପେଟ ପୋଷିବାର ଦାୟିତ୍ୱ ତୁଲେଇବାକୁ ଯାଇ ସେ କିଛି ଗୋଟାଏ କାମ କରୁଥାଆନ୍ତେ ନିଶ୍ଚୟ । କେଉଁ ଚାକିରି ଅବା ବୃତ୍ତି ବ୍ୟବସାୟ । କିନ୍ତୁ ତାଙ୍କୁ ଦେଖିଲେ ମନେହୁଏ ଯେ ସେ କୌଣସିଥିରେ ହେଲେ ବିଶେଷ ଉପରକୁ ଉଠିପାରି ନ ଥାଆନ୍ତେ । ଅଧାରୁ ରହିଯାଇଥାଆନ୍ତେ । କାରଣ ତାଙ୍କ ଚେହେରାରୁ ଜଣାପଡ଼େ ଯେ ସେ ଜଣେ ଅତ୍ୟନ୍ତ ସରଳ ପ୍ରକୃତିର ଲୋକ; ଅନ୍ୟ ଅର୍ଥରେ ନିର୍ବୋଧ । ଆଖିରେ ବୁଦ୍ଧିର ସ୍ଫୁରଣ ନାହିଁ, ଚିବୁକରେ ଦୃଢ଼ତା ନାହିଁ, ଗାଲ ଦି'ଟା ଅତି ବେଶି ପୁଚୁକା, ଇତ୍ୟାଦି । ତେଣୁ ଏଇ ଲୋକଟା କେଉଁ ଉଚ୍ଚ ଆସନରେ ବସିପାରିବ ବୋଲି ଭାବି ହୁଏ ନାହିଁ ।

କିନ୍ତୁ ଦେଖ ଏମିତି ହେଲା ଯେ ସେ ଜଣେ ବିଶିଷ୍ଟ କବି ବୋଲି ଗଣା ହେଲେ ଦିନେ । ଏବଂ ସେଥିଯୋଗୁଁ ଯେଉଁ ଉଚ୍ଚ ଆସନ ମିଳିଲା ତାଙ୍କୁ ତାକୁ ସେ ସ୍ୱଭାବତଃ

ତାଙ୍କର ପ୍ରାପ୍ୟ ବୋଲି ମନେକଲେ । କେମିତି ବା ମନେକରିବେ ନାହିଁ ଯେତେବେଳେ ଏକାଧିକ ପ୍ରଶଂସା ମିଳିଲା ତାଙ୍କୁ ବିଭିନ୍ନ ପତ୍ରପତ୍ରିକାରେ, ଯେ ଅନେକଦିନ ପରେ ଜଣେ ସଚ୍ଚା କାବ୍ୟଧର୍ମୀ କବି ଆବିର୍ଭୂତ ହୋଇଛନ୍ତି ଆମ ରାଜ୍ୟରେ ? ଏହି ସ୍ୱୀକୃତି ଆହୁରି ଆଖିଦୁରୁଶିଆ ହୋଇ ଉଠିଲା, ଯେତେବେଳେ 'ଉତ୍କଳ କଳାକୁଞ୍ଜ' ପରି ଗୋଟିଏ ବିଶିଷ୍ଟ ସାଂସ୍କୃତିକ ଅନୁଷ୍ଠାନ ପୁରସ୍କାରଟିଏ ବଢ଼େଇ ଦେଲା ତାଙ୍କ ହାତକୁ ।

କିନ୍ତୁ ସେତେବେଳକୁ ସେ ମଧ ବୟସରେ ପହୁଞ୍ଚି ଗଲେଣି । ତା' ପୂର୍ବରୁ, ଅର୍ଥାତ୍ ତାଙ୍କ ଉଚ୍ଚ ଆସନରେ ପ୍ରତିଷ୍ଠିତ ହେବା ପୂର୍ବରୁ, ଗୋଟାଏ ଦୁଃଖ ବାରମ୍ବାର ଆସୁଥିଲା ତାଙ୍କ ମନରେ । ଯେ ଦୁନିଆ ତାଙ୍କୁ ଏତେ ସମ୍ମାନ ଦେଉଛି ସିନା, କିନ୍ତୁ ତାଙ୍କ ନିଜ ବାପା ପୁଅର ସ୍ୱତନ୍ତ୍ର ନିଜତ୍ୱ, ତା'ର ଅତି ବିଶିଷ୍ଟ ବଡ଼ପଣକୁ ବୁଝିବାକୁ ନାହାନ୍ତି । ସେହେତୁ ଗୋଟାଏ ଦୁଃଖର ଭାଷା ଉଚ୍ଚାରିତ ହୁଏ ତାଙ୍କ ମୁହଁରୁ, ଅନେକ ସମୟରେ –

ବାପା ମୋତେ ବୁଝୁ ନାହାନ୍ତି !

ଯଥାକ୍ରମେ ଏବଂ ବିଶେଷତଃ 'ଉତ୍କଳ କଳା କୁଞ୍ଜ'ର ପୁରସ୍କାର ପାଇଲା ପରେ ଏଇ ଦୁଃଖ ଦୂରୀଭୂତ ହେଲା । ଯେତେବେଳେ ସେ ଦେଖିଲେ ଯେ ବାପା ପୀତାମ୍ବର ପଣ୍ଡା ମଧ ତାଙ୍କର କବିତ୍ୱ ଜନିତ ବଡ଼ପଣକୁ ସ୍ୱୀକାର କରୁଛନ୍ତି ।

କିନ୍ତୁ ମଧବୟସ ପାରି ହୋଇ ବୃଦ୍ଧାବସ୍ଥାରେ ପହୁଞ୍ଚିଲା ପରେ ସେହିପ୍ରକାର ଦୁଃଖ ପୁଣି ହଇରାଣ କଲା ତାଙ୍କୁ, ଏବଂ ତାହା ବୋଧହୁଏ ପୂର୍ବାପେକ୍ଷା ଅଧିକ ଯନ୍ତ୍ରଣା ଦେଉଥିଲା ତାଙ୍କୁ ନାନାଦି କାରଣରୁ । ଏବଂ ତା'ର ଭାଷା ଥିଲା ଏଇ -

ସର ମୋତେ ବୁଝୁ ନାହିଁ !

ଜଗଦ୍‌କୃଷ୍ଣ, ଡାକନାଆଁ କୃଷ୍ଣ, ଗୋଟିଏ ପୁରୋହିତ ବଂଶର ପିଲା । ବଂଶର କାହାରିକୁ ବଡ଼ଲୋକ ବୋଲି କୁହାଯିବ ନାହିଁ । ଅପରନ୍ତୁ ଅନେକେ ଦରିଦ୍ର ପଦବାଚ୍ୟ । କିନ୍ତୁ ସେହି ପ୍ରିପ୍ରେକ୍ଷୀରେ ଜଗଦମ୍ବା ଠାକୁରାଣୀଙ୍କର ବଡ଼ପଣ୍ଡା 'ପୀତାମ୍ବର ନନା'ଙ୍କୁ ଜଣେ ସଫଳ ପୁରୋହିତ ବୋଲି କହିଲେ ଭୁଲ୍ ହେବ ନାହିଁ । ଯେହେତୁ ବିରାଦରିରେ କେବଳ ସେଇ ଜଣକ କୋଠାଟିଏ ତୋଳିଥିଲେ । ଦି'ମହଲା କୋଠା, ଯାହାର ତଳମହଲା ଭଡ଼ା ଲାଗିଥିଲା । ମଧ ଏଇ ନନା ଜଣକ ତାଙ୍କ ନିଜର 'ହିରୋହଣ୍ଡା' ମୋଟରବାଇକ୍‌ରେ ଚଢ଼ି ଯାଆନ୍ତି ବିଭିନ୍ନ ଦୂର ଜାଗାକୁ । ସେତେବେଳେ କେବଳ ତାଙ୍କ ମୂଲ୍ୟବାନ୍ ହେଲେ ଗୈରିକ ପରିଧାନରୁ ଜଣାପଡ଼େ ଯେ ସେ ଜଣେ ସଫଳ ତଥା ଆଧୁନିକ ପଣ୍ଡା ପୁରୋହିତ ହୋଇଥିବେ ପରା !

କ'ଣ ଏଇ ସଫଳତାର ଭେଦ ? ପୀତାମ୍ବରବାବୁଙ୍କ ପଚାରିଲେ ସେ କହିବେ ମାଆ ଜଗଦମ୍ବାଙ୍କ କୃପା । ଏବଂ ଗରାଖ-ଯଜମାନମାନଙ୍କୁ ପଚାରିଲେ ସେମାନେ କେତେ କଥା କହିବେ, ଯାହା ଆଂଶିକ ସତ୍ୟ ହୋଇପାରେ । କିଏ କହିବ ଯେ ତାଙ୍କର ଗୌର ବପୁ ଓ ଜ୍ୟୋତିର୍ମୟ ଠାଣି ସର୍ବସାଧାରଣ ପୂଜାପଣ୍ଡାଙ୍କ ଚେହେରାରୁ ବାରି ହୋଇଯାଏ, ଏବଂ ସେଇ ହେଉଛି ତାଙ୍କ ସଫଳତାର ମଞ୍ଜି । ପୁଣି କିଏ କହିବ ଯେ ତାଙ୍କ ସଂସ୍କୃତ ଉଚ୍ଚାରଣର ତୁଳନା ନାହିଁ । କିନ୍ତୁ ପୀତାମ୍ବରବାବୁ ଜାଣନ୍ତି ତାଙ୍କ ସଫଳତାର ଅସଲ କାରଣ କ'ଣ । ହଁ, କେହି ମନା କରିପାରିବ ନାହିଁ ଯେ ମୁଁ ଜଣେ ରାଜଗୁରୁଙ୍କ ପରି ଦେଖାଯାଏ (ପୁଅଟା କେମିତି ମୋ ଚେହେରା ପାଇଲା ନାହିଁ କେଜାଣି !), ମୋର ସଂସ୍କୃତ ଉଚ୍ଚାରଣ ଅବଶ୍ୟ ଉଚ୍ଚକୋଟୀର, କିନ୍ତୁ ମୋର ସଫଳତା ଭିନ୍ନ ଧାତୁରେ ଗଢ଼ା ଯାହା ତମେସବୁ ବୁଝିପାରିବ ନାହିଁ । ପ୍ରଥମେ ଜଗଦମ୍ବାଙ୍କ କୃପା, କିଛି ସନ୍ଦେହ ନାହିଁ ସେଥିରେ । ଏବଂ ଦ୍ୱିତୀୟରେ ଭି.ଆଇ.ପି.ମାନଙ୍କର ଅନୁଗ୍ରହ । କାରଣ ପୀତାମ୍ବର ନନାଙ୍କୁ ଜଣା ବିଭିନ୍ନ କିସମର ଭି.ଆଇ.ପି.ମାନଙ୍କୁ କେମିତି ସନ୍ତୁଷ୍ଟ କରିବାକୁ ହୁଏ । ବିଭିନ୍ନ ଭାବରେ । ମିସେସ୍‌ଙ୍କର ଇଚ୍ଛା ଅନୁଯାୟୀ ସନ୍ତୋଷଜନକ ପୂଜାମାଜଣା ଠାରୁ ଆରମ୍ଭ କରି ମିଷ୍ଟରଙ୍କ ପାଇଁ ନାନାଦି ଭୋଗ୍ୟବସ୍ତୁ ଯୋଗାଡ଼ କରି ଆଣିବାରେ, ଯାହାକୁ ହୁଏତ ଆଧାତ୍ମିକ ବୋଲି କୁହାଯିବ ନାହିଁ । ଫଳରେ ଭି.ଆଇ.ପି.ମାନେ ଆଗଭର ହୁଅନ୍ତି ତାଙ୍କୁ ନାନାଭାବରେ ସାହାଯ୍ୟ କରିବାଲାଗି, ମୋଟା ପାରିତୋଷିକ ଛଡ଼ା ।

ଏହି କାରଣରୁ ପୀତାମ୍ବରବାବୁଙ୍କର ବ୍ୟାକୁଳ ପ୍ରାର୍ଥନା ଥିଲା ଜଗଦମ୍ବାଙ୍କ ଠାରେ - ମୋର ଏଇ ଗୋଟିଏ ବୋଲି ପୁଅ ଭି.ଆଇ.ପି.ଟିଏ ହୋଇପାରନ୍ତା ନାହିଁ ? ତା' ହେଲେ ଜାଣନ୍ତି ଯେ ମୋର ଏଇ ସଫଳତାର କିଛି ମୂଲ୍ୟ ଅଛି । କିନ୍ତୁ ସେଥିର କୌଣସି ଲକ୍ଷଣ ମିଳିଲା ନାହିଁ ତାଙ୍କୁ କୃଷ୍ଣର ପ୍ରଗତିକୁ ନେଇ । ପାଠପଢ଼ାରେ ନିକୃଷ୍ଟ ନ ହେଲେ ମଧ୍ୟ ସାଧାରଣ ଏବଂ ଚାକିରି ସିନା ମିଳିଲା ଗୋଟାଏ ବଡ଼ କମ୍ପାନୀରେ, ଜଣେ ଉପକୃତ ଭି.ଆଇ.ପି.ଙ୍କ କୃପାରୁ, କିନ୍ତୁ ତାକୁ କିରାଣିଆ ଛଡ଼ା ଆଉ କିଛି କୁହାଯାଇ ନ ପାରେ । ଅବଶ୍ୟ - 'ଆରେ, ତମ ପୁଅ କବିଟିଏ ହୋଇଛି ବୋଲି ଶୁଣିଲି !' ବୋଲି ତାଙ୍କୁ କୁହନ୍ତି କେତେଜଣ । କିନ୍ତୁ ତାହା ଉପହାସ ପରି ମନେହୁଏ । ସତେକି ତାଙ୍କୁ କୁହାଯାଉଛି - ରାଜଗୁରୁ ବାପର ପୁଅ ରାଜଦରବାରର ଭାଟଟିଏ ହେଲା । ଆଉ କ'ଣ ଦରକାର ଥିଲା ତମର ?

ବାପାଙ୍କର ସୁଦୃଶ୍ୟ ଦୁଃଖ ଘାରିଦିଏ ପୁଅକୁ । ତେଣୁ ଯେଉଁ ଆନନ୍ଦ ମିଳିବା କଥା ଉଦୀୟମାନ କବି ଜଗତ୍‌କୃଷ୍ଣଙ୍କୁ, ତାଙ୍କର ନୂଆ କବିତାଟିଏ ଲେଖି ସାରିଲା ପରେ, ତାହା ପୂରାପୂରି ମିଳେ ନାହିଁ ତାଙ୍କୁ । ଏବଂ ମନରେ ଆସେ -

ବାପା କ'ଣ କେବେହେଲେ ବୁଝିବେ ନାହିଁ ମୋତେ ? ମୋ କବିତ୍ୱର ବଡ଼ପଣ, ଯାହା ଦୁନିଆର ସଫଳ ରାମା-ଦାମା-ଶାମାଙ୍କର ବଡ଼ଲୋକି ଠାରୁ ଯଥେଷ୍ଟ ଭିନ୍ନ ଏବଂ ଉର୍ଦ୍ଧ୍ୱରେ ?

ଶେଷକୁ ପୀତାମ୍ବର ବୁଝିଲେ । କିନ୍ତୁ ବୁଝିବାରେ ଅନେକ ଦିନ ଲାଗିଲା ତାଙ୍କୁ । ସେତେବେଳକୁ ସେ ବୁଢ଼ା ହେଲେଣି, ଏବଂ ଜଗତ୍‌କୃଷ୍ଣଙ୍କୁ ତେପନ ବର୍ଷ ହେଲାଣି । ବୁଝିଲେ ଯେତେବେଳେ ପ୍ରଶଂସାର ମାତ୍ରାକୁ ସାମାନ୍ୟ ବୋଲି କହିହେଲା ନାହିଁ ଏବଂ ତାଙ୍କର ହୃଦୟ ଭରିଗଲା ଯେତେବେଳେ ପଚିଶହଜାର ଟଙ୍କାର ଚେକ୍‌ଟିଏ ପୁଅର ହାତକୁ ବଢ଼େଇଦିଆଗଲା 'ଉତ୍କଳ କଳାକୁଞ୍ଜ' ତରଫରୁ । ପୁଣି ଏକ ବିରାଟ ସମାରୋହରେ ଯେଉଁଠି ଖୋଦ୍ ମୁଖ୍ୟମନ୍ତ୍ରୀ ଉପସ୍ଥିତ ଥିଲେ, ଅନେକ ଭି.ଆଇ.ପି. ମାନଙ୍କ ଗହଣରେ । ସେଇଠୁଁ ଯାଇଁ ସେ ଜାଣିଲେ ଯେ ଅନେକ ଗୁଣ ଅଛି ତାଙ୍କ ପୁଅର କବିତାରେ, ଏବଂ ସେଥିପାଇଁ କକେଇ ବାନାମ୍ବର ପଣ୍ଡାକୁ ଦୋଷ ନ ଦେଇ ଧନ୍ୟବାଦ ଦେଲେ ଚଳିବ ।

ପୀତାମ୍ବରବାବୁଙ୍କର କକେଇ ପୁରୋହିତ ବାନାମ୍ବର ପଣ୍ଡା ତାଙ୍କ ପୁତୁରାଙ୍କ ପରି 'ସଫଳ' ହୋଇ ପାରି ନ ଥିଲେ ସତ, କିନ୍ତୁ ତାଙ୍କ ସଂସ୍କୃତ ଉଚ୍ଚାରଣ ନିଃସନ୍ଦେହରେ ଅଧିକ ତେଜସ୍ୱୀ ଏବଂ ସୁଶ୍ରାବ୍ୟ ଥିଲା । ଅଧିକନ୍ତୁ ସେ ପ୍ରକୃତରେ ଜଣେ ପଣ୍ଡିତ ଥିଲେ, ସଂସ୍କୃତ ପାଠକୁ ନେଇ । ସଞ୍ଜବେଳେ ତାଙ୍କ ଦାଣ୍ଡପିଣ୍ଡାରେ ବସି ସେ କାଳିଦାସ, ଭବଭୂତି, ମାଘ, ଆଦି କବିଙ୍କର କାବ୍ୟକବିତା ଶୁଣାଇବାକୁ ଭଲପାଆନ୍ତି, ତାକୁ କିଏ ଶୁଣୁ ବା ନ ଶୁଣୁ ଏବଂ ହାୟ ! (ପୀତାମ୍ବରବାବୁଙ୍କ ଦୃଷ୍ଟିରେ) ଏଗାର ବାର ବର୍ଷ ବୟସର କୃଷ୍ଣ ତାଙ୍କରି ପାଲରେ ପଡ଼ିଲା ।

କଥାଟା ସେଇ 'କୁକ୍ଷଣ'ରୁ ଆରମ୍ଭ ହେଲା ଯେତେବେଳେ ପୀତାମ୍ବରଙ୍କ ପାଟିରୁ ବାହାରି ପଡ଼ିଲା ତାଙ୍କ କକେଇଙ୍କ ଆଗରେ ଯେ କୃଷ୍ଣ ଆଉ କେଉଁ ପାଠରେ ଯାହା କରୁ ନ କରୁ, ସଂସ୍କୃତରେ ଭଲ ମାର୍କ୍ ରଖୁଛି । 'ସତେ !' ବୋଲି ଏକ ହର୍ଷୋତ୍‌ଫୁଲ୍ଲ ଚିତ୍କାର କରି ଉଠିଲେ ବାନାମ୍ବର, ଏବଂ ପୁତୁରାକୁ କହିଲେ ଯଥାଶୀଘ୍ର ତାକୁ ତାଙ୍କ ପାଖରେ ଆଣି ପହଞ୍ଚେଇବା ଲାଗି । ସେଇଠୁଁ ଏମିତି ହେଲା ଯେ କୃଷ୍ଣକୁ ଶୁଣିବାକୁ ପଡ଼ିଲା, ଦିନ ପରେ ଦିନ, ସଂସ୍କୃତ କାବ୍ୟକବିତାର ମାହାତ୍ମ୍ୟ ଏବଂ ଦିନେ ସେ ଶୁଣିଲା ଗୋଟାଏ ମଜାକଥା ସେଇ ମାହାତ୍ମ୍ୟକୁ ନେଇ ।

...ବୁଝିଲୁ କୃଷ୍ଣ ! ଅସଲ ହେଉଛି କଳ୍ପନା । କେତେଦୂର ତମେ ବଦଳେଇଦେଇ ପାରିବ ତମ ଆଖିଦେଖା ଜିନିଷଗୁଡ଼ାକୁ । ଏବଂ ତମ ଇଚ୍ଛା ଅନୁଯାୟୀ । କହିବ ଇଏ ହେଉଛି ତା'ରି ପରି । ଯେମିତିକି ଉପସ୍ଥିତ ସତ 'ଇଏ'ଟା ଆଉ ରକମେ ଦେଖାଯିବ । ଆହୁରି ସୁନ୍ଦର, ଆହୁରି ଅସନା, କିମ୍ବା ଆହୁରି ମଉଜିଆ । ସବୁ ତମ ଇଚ୍ଛା ଉପରେ

ନିର୍ଭର କରେ । ହେଲେ ତୁଳନାଟା ଯେତେ ନୂଆ ପରି ଲାଗୁଥିବ ସେତେ ଭଲ । ତମେ ଆଉ ଗୋଟିଏ ଭଗବାନ୍ ସେତେବେଳେ । କ'ଣ ବୁଝୁଛୁ ମୁଁ ଯାହା କହୁଛି ?

କୃଷ୍ଣ ମୁଣ୍ଡ ଟୁଙ୍ଗାରିଲା । ଦୃଢ଼ତାର ସହ ।

ଏବଂ ଏଇ କଳ୍ପନାଶକ୍ତି କେତେ ପ୍ରଖର ହୋଇପାରେ ଜାଣିଛୁ ? ଆମେ କୁଢ଼ି କବିମାନେ ସିନା 'ଇଏ ହେଉଛି ସିଏ' ବୋଲି କହିପାରୁ ଦି'ଟା ଭିନ୍ନ ହେଲେ ଚିହ୍ନା ଜିନିଷକୁ ନେଇ, କିନ୍ତୁ ମହାକବିମାନେ ତାଙ୍କ ଜୀବନରେ ଦେଖି ନ ଥିବା ଜିନିଷଟାକୁ ମଧ୍ୟ ଆଣି ଥୋଇଦିଅନ୍ତି ତମ ଆଗରେ, ଆଉ କୁହନ୍ତି ''ଦେଖିଲ, ଇଏ କ'ଣ ପ୍ରକୃତରେ ସିଏ ନୁହେଁ ?'' ତା'ରି ନାଆଁ ଉପମା । ଉପମା କାଳିଦାସସ୍ୟ । ଶୁଣ୍, ତାଙ୍କ 'ରଘୁବଂଶ'ରୁ ପଦେ । ରାମଚନ୍ଦ୍ର ଯାହା କହୁଛନ୍ତି ସୀତାଙ୍କୁ ଲଙ୍କାରୁ ଭାରତକୁ ଫେରିଲା ବେଳେ, ତାଙ୍କ ପୁଷ୍ପକ ବିମାନରେ ବସି । ବିମାନ ଏଇକ୍ଷଣି ଭାରତର ପୂର୍ବଉପକୂଳ ଉପର ଦେଇ ଯାଉଛି ଉତ୍ତରକୁ, ଅଯୋଧ୍ୟା ଅଭିମୁଖେ । ଏବଂ ସେତେବେଳେ ଯେଉଁ ଦୃଶ୍ୟ ଦେଖିବାକୁ ପଡୁଛି, ତାକୁ ସେ ଚିହ୍ନଉଛନ୍ତି ସୀତାଙ୍କ ପୁରୁଖା ଚିହ୍ନରା ଗରାଖଟିଏ ପରି । କହିଲେ -

ଦୂରାଦୟଶ୍ଚକ୍ର ନିଭସ୍ୟ ତନ୍ୱୀ
ତମାଲତାଳୀ ବନରାଜି ନୀଳା
ଆଭାତି ବେଳା ଲବଣାମ୍ବୁରାଶେଃ
ଧାରା ନିବଦ୍ଧେବ କଳଙ୍କରେଖା ।

କ'ଣ ନା ଏଇ 'ତମାଲତାଳୀ ବନରାଜିନୀଳା' ହେଉଛି ଗୋଟାଏ ଶଗଡ଼ଗାଡ଼ିର ଚକରେ, ମାନେ ତା' ଅଖରେ ବୋଳା ହୋଇଥିବା କଳା ! କିଓ, ତମେ କେମିତି ଜାଣିଲ ସେକଥା ? ଅବଶ୍ୟ ମହାକବି ତମେ ଦେଖିଛ ଶଗଡ଼ଗାଡ଼ିର ଚକ, କିନ୍ତୁ ତମେ କ'ଣ କୋଉ ପୁଷ୍ପକ ବିମାନରେ ଚଢ଼ିଛ, ନା ତମବେଳେ ଉଡ଼ାଜାହାଜଟିଏ ଥିଲା, ଯାହା ଉପରେ ଚଢ଼ି ତମେ ସେଇ ଦୃଶ୍ୟର ଅନୁମାନ କରି ପାରିଥିବ ? ତଥାପି ତମେ ଛାଡ଼ିଦେଲ ଗୋଟାଏ ଉପମା ଯାହା ନିଛକ୍ ସତ ବୋଲି ମନେହେଉଛି । ଏଇଆକୁ ଯେ କହନ୍ତି କଳ୍ପନା ! ଆଉ କବିର ଭଗବାନ୍‌ପଣିଆ !...

ସେଇଦିନଠୁଁ କିଶୋର କୃଷ୍ଣର ହାତ ଖୁଜୁବୁଜୁ ହେଲା କିଛି ଲେଖିବାପାଇଁ, ଯେଉଁଥିରେ ସେ ଚମକେଇ ଦେବ ତା'ର ଏଇ ପଣ୍ଡିତ ଜେଜେଙ୍କୁ । ଏବଂ ସେ ତାକୁ ଶହେରୁ ଶହେ ମାର୍କ ଦେବେ ଯାହା ସ୍କୁଲ୍ ପଣ୍ଡିତେ ଦେଇପାରି ନାହାନ୍ତି ତାକୁ, ସଂସ୍କୃତରେ କିମ୍ବା ଓଡ଼ିଆରେ । କିନ୍ତୁ ଦିନ ପରେ ଦିନ ଗଡ଼ିଗଲା, ଏବଂ ତା'ର କଲମଟା କିଛି କରିପାରିଲା ନାହିଁ ସେଦିଗରେ ।

ହେଲେ ଯେଉଁ ଆଷାଢ଼ର ପହିଲି ବର୍ଷା କାଳିଦାସ ତଥା ବିରହୀ ଯକ୍ଷର ମନକୁ ଚହଲେଇ ଦେଇଥିଲା, ତାହା ମଧ୍ୟ କୃଷ୍ଣକୁ ବସେଇ ଉଠେଇ ଦେଲା ନାହିଁ ସେଦିନ, ପ୍ରାୟ ବର୍ଷକ ପରେ । ଏବଂ ସେ ଅଡ଼ି ବସିଲା କିଛି ଲେଖିବ ବୋଲି । ଅଲବଦ୍ ଲେଖିବ ।

ଇସ୍ ! କେତେ ବଡ଼ ବଡ଼ ଠୋପା ସବୁ ଝରି ପଡୁଛି ପୃଥିବୀ ଉପରେ ! ଆଉ ଆଙ୍କି ହୋଇ ଯାଉଛି ଆମ ଅଗଣାରେ, ଫୁଲ ଫୁଟେଇଲା ପରି ! କିନ୍ତୁ କୃଷ୍ଣର ମନ ବଳିଲା ନାହିଁ ସେମିତି କିଛି କହିବା ଲାଗି । ନା, ତା' ଉଦାସିଆ ମନ ଆଉ ପ୍ରକାରେ କହୁଛି । କହୁଛି ଯେ ଭଗବାନ୍ କାନ୍ଦୁଛନ୍ତି । କିନ୍ତୁ ... ଧାତ୍ ! ବର୍ଷାକୁ ଲୁହଠୋପା ବୋଲି କହିବା କିଛି ନୂଆ କଥା ନୁହେଁ । କୃଷ୍ଣ ରାଗିଲା ନିଜ ଉପରେ ଏବଂ ତା' କଲମ ଉପରେ, ଯେ ଠିକଣା ଉପମା ଜୁଟୁ ନାହିଁ ତା' ମନକୁ ।

କିନ୍ତୁ ସେଇଠୁଁ ହଠାତ୍ ଗୋଟିଏ ନୂଆ କଥା ତା' ମନକୁ ଆସିଲା । ଭଗବାନ୍ ଖାଲି କାନ୍ଦୁ ନାହାନ୍ତି, ସେ ରାଗିକରି କାନ୍ଦୁଛନ୍ତି । ପୂରାପୂରି ଭାଙ୍ଗି ପଡ଼ିଛନ୍ତି ତାଙ୍କ ରାଗରୁଷାକୁ ସମ୍ଭାଳି ନ ପାରି । ସେଇଲାଗି ଏଇ ଢବା ଢବା ବରକୋଳିଆ ଲୁହ ଠୋପା ଯାହା ଅଜାଡ଼ି ହୋଇ ପଡୁଛି ପୃଥିବୀ ଉପରେ । ସତେ କହିଲା ପରି - ଏତେ ଦୁଃଖ, ଏତେ ଯନ୍ତ୍ରଣା ଦେଇ ପାରିଲ ମୋତେ ? ନା, ମୁଁ ଆଉ ସହିପାରିବି ନାହିଁ, ମୋଟେ ସହି ପାରିବି ନାହିଁ । ଅଜାଡ଼ି ହୋଇ ପଡ଼ିବି ତମ ଉପରେ, ସେଇଠୁଁ ତମେ ଯାହା କରୁଛ କର ।

କୃଷ୍ଣ ଲେଖି ବସିଲା ତା'ର ପହିଲି କବିତା 'ଭଗବାନ୍‌ଙ୍କ ଲୁହ' । ହେଲେ ସେ ସେଇ ପହିଲି ବର୍ଷାରେ ରହିଗଲା ନାହିଁ । କାରଣ ସେ ଜାଣେ ଯେ ଭଗବାନ୍ ଆହୁରି କେତେ କାନ୍ଦିବେ, ବର୍ଷା ଋତୁ ସରିବା ଯାଏଁ । ଶେଷକୁ ଖାଲି ଝୁପୁ ଝୁପୁ ବର୍ଷା, ସୁଁ ସୁଁ କାନ୍ଦଣା, କଇଁ କଇଁ କାନ୍ଦଣା, ପୂରାପୂରି ଥମିଯିବା ଯାଏଁ । କାହିଁକିନା ସେ ଥକି ଗଲେଣି, ଆଉ ବୁଝିଲେଣି ଯେ କୋଉ ରାଗଅଭିମାନର କିଛି ମୂଲ୍ୟ ନାହିଁ ଅଗୁଆଁର ମଣିଷ ପାଖରେ । ସେ ଭଗବାନ୍‌ଙ୍କୁ କେବେହେଲେ ଭଲ ପାଇପାରିବ ନାହିଁ (କିଏ ଭଲା ଭଲ ପାଇଛି କୃଷ୍ଣକୁ, ବାପା, ବୋଉ, ନା ଆଉ କେଉଁ ନିଜ ଲୋକ ? ଖାଲି ଲାଗିପଡ଼, ତୁ ଏଇଆ ହେବୁ ବଡ଼ହେଲେ, ଚଉକିରେ ବସିବୁ, ହାକିମଟିଏ ହେବୁ, ନ ହେଲେ ମନ୍ତ୍ରୀଟିଏ, ଛେନାଗୁଡ଼ ପାଚିଲା କଦଳୀ !)

ଏହି ଭାବରେ ଭଗବାନ୍ କାନ୍ଦିଲେ କୃଷ୍ଣ ପାଇଁ ଏବଂ ସେ ଯଥାଶୀଘ୍ର ତା'ର କବିତାଟିକୁ ଆଣି ଦେଖେଇଲା ତା'ର ସଂସ୍କୃତପ୍ରେମୀ ସାହିତ୍ୟପ୍ରେମୀ ବାନୁଜେଜେଙ୍କୁ । ଏବଂ ଯେଉଁ ନିବିଡ଼ ଆଶ୍ଲେଷରେ ଅଙ୍ଗୀକାର ମିଳିଲା ତାକୁ ଜେଜେଙ୍କଠାରୁ ତାହା ଶତକଡ଼ା ଶହେ ମାର୍କଠାରୁ ଆହୁରି ଅଧିକ ବୋଲି ମନେହେଲା ତା'ର ।

ଏବଂ ସେଇଦିନଠୁଁ ଗଜୁରି ଉଠିଲା ଜଗଦ୍‌କୃଷ୍ଣ ପଣ୍ଡାଙ୍କ କବିତ୍ୱ । ଯେତେବେଳେ ତାକୁ ତେର ପୂରି ଚଉଦ ଚାଲୁଥାଏ ।

କିନ୍ତୁ ଲକ୍ଷ୍ୟ କରିବା ଉଚିତ ଯେ କିଶୋର କୃଷ୍ଣର ଏଇ ପହିଲି କବିତାରେ ଏବଂ ସେଇ ବୟସରେ, ସେ କେବଳ ଫୁଲ ଫୁଟାଇବାକୁ ନାହିଁ କଲେ ନୁହେଁ, ସେ ଭଗବାନ୍‌ଙ୍କୁ ତାଙ୍କ ସିଂହାସନରୁ ଉଠେଇ ଆଣିଲେ କାନ୍ଦିବାପାଇଁ । ଭାଙ୍ଗିପଡ଼ିଲା ପରି କାନ୍ଦିବାଠାରୁ ଆରମ୍ଭ କରି ସୁଁ ସୁଁ କାନ୍ଦଣା ଯାଏଁ । ଯାହାର ଶେଷକଥା ହେଲା ହାରିଯିବାର ଭାବ । ହେଲେ ସେଇଥିରେହିଁ ଆସିଲା କୃଷ୍ଣ ଓରଫ୍ ଭବିଷ୍ୟତର କବି ଜଗଦ୍‌କୃଷ୍ଣଙ୍କର ଆତ୍ମସନ୍ତୋଷ । ଯେ ସେ ତାଙ୍କ ମନଲାଖି କିଛି ସୃଷ୍ଟି କରି ପାରିଛନ୍ତି ।

ହଁ, ଏଇ କବିତାଟି ଥିଲା କବି ଜଗଦ୍‌କୃଷ୍ଣଙ୍କର ସ୍ୱାକ୍ଷର ଏବଂ ପ୍ରତିଶ୍ରୁତି ଭବିଷ୍ୟତ ପାଇଁ । ବିଷାଦ ହେଲେ ତାଙ୍କ ମନ ତାଙ୍କୁ କହିଲାପରି ଲାଗେ ଯେ ଏଇ ବିଷାଦହିଁ ତୋର ଆନନ୍ଦ ଏବଂ ବଡ଼ପଣ । ବାପା କି ଆଉ କିଏ ତାକୁ ନ ବୁଝିଲେ ନାହିଁ !

କିନ୍ତୁ କୋଉଠୁଁ ଆସିଲା ଏଇ ବିଷାଦ, ଏତେ ଅଳ୍ପ ବୟସରେ ? ତା'ର ସମୀକ୍ଷା ଦୁଷ୍କର, ମନସ୍ତତ୍ତ୍ୱବିଦ୍‌ମାନଙ୍କ ଇଲାକା । ତେବେ ମୋଟାମୋଟି କହିଲେ ଭୁଲ୍ ହେବ ନାହିଁ ଯେ ଜଗଦ୍‌କୃଷ୍ଣଙ୍କ ମନରେ ଏକ ହୀନମ୍ମନ୍ୟତାର ଭାବ ଆସିଯାଇଥିଲା ତାଙ୍କ ପିଲାଟିଦିନୁ ଯେ ସେ ଅପାରଗ । ବାପାଙ୍କର ଚେହେରା ନାହିଁ ତାଙ୍କଠିଁ, କି ବୋଉର କାମିକାପଣ । ପଢ଼ାପଢ଼ିରେ ସାଧାରଣ । ଖେଳକୁଦରେ ଜିରୋ ! ଏବଂ ଦି' ପଦ ଟାଣୁଆ କଥା କହି ହୁଏ ନାହିଁ କେଉଁ 'ଶତ୍ରୁ' ସହପାଠୀକୁ, ସେ ତାଙ୍କୁ ଯେତେ ଚିଡ଼େଇଲେ ମଧ୍ୟ, କାରଣ କୃଷ୍ଣ ଲଢ଼େଇ କରି ପାରିବ ନାହିଁ, ତା' ସାଙ୍ଗରେ । ଚିତ୍‌ପଟାଙ୍ଗ୍ ହୋଇ ପଡ଼ିଯିବ ଲଢ଼େଇ ଆରମ୍ଭ ହେଉ ନ ହେଉଣୁ । ଇତ୍ୟାଦି । କିନ୍ତୁ କବିତ୍ୱର ଆତ୍ମପରିଚୟ ପାଇଲା ପରେ ସେ କ୍ରମଶଃ ଏଇ ହୀନମ୍ମନ୍ୟତାକୁ ଦୂର କରିପାରିଲେ । ଯେ ମୁଁ ମୋ ହିସାବରେ ବଡ଼, ଏବଂ ସେଇ ବଡ଼ପଣ ନିଆରା । ହେଲେ ତାକୁ ସହଜେ ବୁଝନ୍ତି ନାହିଁ ସମସ୍ତେ । କିନ୍ତୁ ବୁଝିଲାବାଲା କ'ଣ ବୁଝୁ ନାହାନ୍ତି ? ବାନୁଜେଜେଙ୍କ ଠାରୁ ଆରମ୍ଭ କରି ଇଂରେଜୀ ଟିଚର୍ ସୁଶୀଲ୍‌ବାବୁ, (ସେ ତାଙ୍କର ଗୋଟିଏ କବିତାର ଇଂରେଜୀ ଅନୁବାଦ କରି ଛପେଇଥିଲେ 'ଟାଇମ୍‌ସ ଅଫ୍ ଇଣ୍ଡିଆ'ରେ), ନିର୍ମଳାଭାଉଜ, (ମାମୁପୁଅଭାଇ ଚିତ୍ତଭାଇନାଙ୍କ ନବପରିଣୀତା ସ୍ତ୍ରୀ), କଲେଜରେ ପଢ଼ିଲାବେଳକୁ ସୁପ୍ରିୟା ନାମକ ସହପାଠିନୀ, ଯେ 'ଝଙ୍କାର'ରେ ତାଙ୍କର ନୂଆ କବିତାଟିକୁ ପଢ଼ି ଆସିଥିଲା ତାଙ୍କୁ ବଧେଇଦେବାପାଇଁ । ଇତ୍ୟାଦି । ସଂଖ୍ୟା ବଢ଼ି ବଢ଼ି ଚାଲିଛି ।

ତେରରୁ ତେପନ ବର୍ଷ ଯାଏଁ କେତେ ଉଠାପକା । ସ୍ୱୀକୃତିର ଅନେକ ଆନନ୍ଦ । ତଥା ଅନେକ ନିରାଶା । ହେଲେ କ୍ରମଶଃ ତାଙ୍କର ମନେହେଲା ଯେ ବାପା ଏବଂ ତାଙ୍କରି

ପରି ଅଳ୍ପ କେତେକଙ୍କୁ ଛାଡ଼ିଦେଲେ ପ୍ରାୟ ସମସ୍ତେ ବୁଝୁଛନ୍ତି ତାଙ୍କର ବଡ଼ପଣ, ତାଙ୍କ କବିତାକୁ ପୂରାପୂରି ନ ବୁଝନ୍ତୁ ପଛେ । ଜଗଦ୍‌କୃଷ୍ଣ ପଣ୍ଡା ଜଣେ ସୁବିଦିତ କବି । ତାଙ୍କର ଆତ୍ମବିଶ୍ୱାସ ତାଙ୍କ ଚେହେରାକୁ ମଧ ବାଦ୍ ଦେବାକୁ ଚାହିଁଲା ନାହିଁ । ଏପରିକି ସେ କହିଲେ ଯେ ତାଙ୍କ ଆଖିର ଚାହାଣିକୁ (ତାକୁ ନେଇ କେଜାଣି କେତେ ଆକ୍ଷେପ ଶୁଣିବାକୁ ପଡ଼ିଛି ତାଙ୍କୁ, ପ୍ରତ୍ୟକ୍ଷରେ ଅବା ପରୋକ୍ଷରେ) ନୀରସ ବୋଲି କହିବା ନିତାନ୍ତ ଅନ୍ୟାୟ । ସିଏ ହେଉଛି କବିସୁଲଭ ସୁଦୂର ଚାହାଣି, କେଉଁଠି ବୋଲି କେଉଁଠି ହଜିଗଲାପରି । ବିଷାଦସୁନ୍ଦର ।

ଏବଂ ଉଲ୍ଲେଖଯୋଗ୍ୟ ଯେ ବାନୁଜେଜେଙ୍କ କଥା ମାନି ନୂଆ ନୂଆ ଉପମା ଗଢ଼ିବାକୁ ଯାଇ ସେ ତାଙ୍କ କଳ୍ପନାଶକ୍ତିକୁ ବିଶେଷଭାବରେ ପ୍ରୟୋଗ କଲେ ପ୍ରକୃତି ପୃଥିବୀରେ ଫଉଲି ଯାଇଥିବା ବିଷାଦ ଭାବକୁ ଚିହ୍ନାଇବାରେ, ଯାହା ତମ ଆଖିରେ ପଡ଼ୁ ନାହିଁ ସହଜେ । ଯଥା -

- ଏଇ ଯେଉଁ ବିହଙ୍ଗମ ଉଡୁଛି ଆକାଶରେ, ଉଡୁଛି ତ ଉଡୁଛି, ସେ କ'ଣ ଆନନ୍ଦରେ ବିହରଣ କରୁଛି ବୋଲି ଭାବୁଛ ? ନା, ବିଚରା ଭୂପୃଷ୍ଠକୁ ଓହ୍ଲେଇ ପାରୁ ନାହିଁ । କାହିଁକିନା ସେଠି କିଛି ଖାଦ୍ୟ ନାହିଁ ତା' ପାଇଁ, ଭେଳା ଭେଳା ଅଖାଦ୍ୟ । କିନ୍ତୁ ସେ କ'ଣ କରିବ ବୋଲି ବୁଝିପାରୁ ନାହିଁ । ଖାଦ୍ୟ ପାଇଁ ଅପେକ୍ଷା କରୁ କରୁ ନିଜେ ଟଳି ପଡ଼ିବ ନାହିଁ ତ କେବେ ହାଲିଆ ହୋଇ ? ବିଲୁଆ କୁକୁରଙ୍କ ଖାଦ୍ୟ ହେବାପାଇଁ ?

- ଦିନେ ସିଏ ଗୋଟାଏ ସତ ଗଛ ଥିଲା । ଯାହାର ସତ ଜୀବନ ଥିଲା, ଫୁଲ, ଫଳ ଓ ପତରକୁ ନେଇ । କିନ୍ତୁ ଏଇକ୍ଷଣି ତା' ଜୀବନ ହେଉଛି ଗୋଟାଏ ଥୁଣ୍ଟା ଅସ୍ଥି; ଆଉ କିଛି ନାହିଁ । ହେଲେ କୋଉ ଚଢ଼େଇ ଯେତେବେଳେ ବସିଯାଏ ବେଳେବେଳେ ତା' ଅଗରେ ଆଉ କିଚିରିମିଚିରି ହୁଏ, ସେ ନିଜକୁ ଫୁସୁଲାଏ ଯେ ଯାହାହେଉ ତା'ରି ଯୋଗୁଁ ସେ ଏତେ ଉପରକୁ ଉଠି ଯାଇପାରୁଛି, ଆଉ ବିଗୁଲ୍ ବଜାଉଛି ସୂର୍ଯ୍ୟଙ୍କୁ, ଯଥାସମୟରେ ବୁଡି ଯିବାପାଇଁ । କିନ୍ତୁ ହାୟ ! ତା'ର ସେଇ ମିଛ ବଡ଼େଇ ମଧ ଖତମ୍ ହୋଇଗଲା ଯେତେବେଳେ ଛିଣ୍ଡା ଗୁଡ଼ିଟାଏ ଗୁଡ଼େଇ ହୋଇ ଅଟକି ଗଲା ସେଠି । ସେଇଦିନଠୁଁ ଥୁଣ୍ଟାବୁଢ଼ା ଗୋଟାଏ ଜୋକର୍ ବନି ଯାଇଛି ! ଏବଂ ସୁଖୀ ସଂସାରକୁ ମଜା ଲାଗୁଛି ତା'ର ଦୁର୍ଦ୍ଦଶା ଦେଖି ।

- ଶିଶିର ବିନ୍ଦୁଟିଏ ଛୁଇଁଥିଲା ସବୁଜ ପତରକୁ । କିନ୍ତୁ ଆସୁ ଆସୁ ଚାଲିଗଲା । ପବନ ତାକୁ ଖସେଇ ଦେଲା, ଖରାତେଜ ତାକୁ ଶୁଖେଇ ଦେଲା । କିନ୍ତୁ ସରୀସୃପଟିଏ ତଥାପି ଚାଲିଛି ସବୁଜ ଉପରେ । ଧୀରେ ସୁସ୍ଥେ, ଅଳସ ବିଳାସରେ । କହୁଛି - ମୁଁ ତୋତେ ଅନୁଭବ କରିବାପାଇଁ ଆସି ନାହିଁ, ବୁଝିଲୁ ? ଆସିଛି ଉପଭୋଗ କରିବାପାଇଁ ।

ସବୁଜ କହୁଛି, ହଁ, ହଁ, ମୁଁ ବି ଉପଭୋଗ କରୁଛି ଯେ, ମୋତେ ବି ଉପଭୋଗ କରି ଆସେ ମ ! କିନ୍ତୁ ସେ ମନେ ମନେ କାନ୍ଦୁଛି ।

ଅନୁଭବ ଏବଂ ଉପଭୋଗର ତାରତମ୍ୟକୁ ନେଇ ଏଇ ଯେଉଁ କବିତାଟିଏ ପ୍ରକାଶ ପାଇଥିଲା ଏକ ବିଶିଷ୍ଟ ପତ୍ରିକାର ପୂଜାସଂଖ୍ୟାରେ, ତାହାହିଁ ମଞ୍ଜୁ ମହାପାତ୍ରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ବିଶେଷ ଭାବରେ, ଏବଂ ସେ ସ୍ୱାମୀଙ୍କୁ ପ୍ରବର୍ତ୍ତାଇ ଥିଲେ ଏଇ ଲୋକଟିକୁ ପୁରସ୍କାର ଦେବା ପାଇଁ 'ଉତ୍କଳ କଳାକୁଞ୍ଜ' ତରଫରୁ । ସ୍ତ୍ରୀଙ୍କ ଦ୍ୱାରା ପ୍ରଭାବିତ ହୋଇ ପିଣ୍ଟୁ ମହାପାତ୍ର ବି କ'ଣ ବିଚାରକ ମଣ୍ଡଳୀକୁ ପ୍ରଭାବିତ କରିଥିଲେ ଏ ଦିଗରେ ? ହେଲେ ହୋଇଥିବ, କିନ୍ତୁ କ୍ଷତି କ'ଣ ଅଛି ସେଥିରେ ? ଜଗଦ୍‌କୃଷ୍ଣ କ'ଣ କବି ବୋଲି ସୁପରିଚିତ ହୋଇ ନ ଥିଲେ ସେତେବେଳକୁ, ଆଉ ତାଙ୍କର ବେଳ ହୋଇ ନ ଥିଲା ଆଖିଦୁରୁଶିଆ ମାନପତ୍ର, ଅଙ୍ଗବସ୍ତ୍ର ଏବଂ ଚେକ୍‌ଟିଏ ପାଇବା ଲାଗି ?

ବେଶ୍ । ତେପନ ବର୍ଷ ବେଳକୁ ଜଗଦ୍‌କୃଷ୍ଣଙ୍କୁ ଏକ ସ୍ୱୀକୃତ କବିତ୍ୱର ପାହ୍ୟା ମିଳିଗଲାଣି, ଯାହା ତାଙ୍କର କେଉଁ ପୁରୁଣା ହୀନମ୍ମନ୍ୟତାକୁ ଦୂର କରି ଏକ ନୂଆ ବଡ଼ପଣର ପ୍ରତ୍ୟୟ ଆଣି ଦେଇଥିଲା ବୋଲି ମନେହୁଏ । କିନ୍ତୁ ଏଇ ବୟସକୁ ତାଙ୍କର ବୃତ୍ତିଗତ ଓ ପାରିବାରିକ ଜୀବନ ମଧ୍ୟ ଯଥେଷ୍ଟ ପାକଳ ହୋଇଯିବଣି । ସେ ଦିଗରେ ତା'ର ସଫଳତା କେତେ ଦୂର ଏବଂ କେଉଁଭଳି ଥିଲା ? ଅନ୍ତତଃ ତାଙ୍କ ନିଜ ଦୃଷ୍ଟିରେ ?

ଜଗଦ୍‌କୃଷ୍ଣଙ୍କୁ ଏହି ପ୍ରଶ୍ନ ପଚରା ହୋଇଥିଲେ ସେ କୁହନ୍ତେ, - ସବୁ ଠିକ୍ ଅଛି । ଅର୍ଥାତ୍ ଆଶାନୁରୂପ । ଉହ୍ୟ ରହିଯାଏ ଯେ ସେ ଦିଗରେ ସମସ୍ତ ଆବଶ୍ୟକତା ପୂରଣ ହୋଇଯାଇଛି । ପ୍ରଶ୍ନ କେବଳ ଆବଶ୍ୟକତାର, କେଉଁ ଉଚ୍ଚାଭିଳାଷର ନୁହେଁ । ହଁ ଆଜ୍ଞା, ସବୁ ଠିକ୍ ଅଛି । ଧନ୍ୟବାଦ ।

ମୁଁ ଯେଉଁ କମ୍ପାନୀରେ ଯୋଗ ଦେଇଥିଲି ପ୍ରଥମେ, ଆସିଷ୍ଟାଣ୍ଟ୍ ହିସାବରେ, ତାକୁ ଛାଡ଼ିଦେଇ ତ ମୁଁ କେତେଆଡ଼େ ବୁଲି ଆସିଲିଣି । କେତେକ ଅବଶ୍ୟ କୁହନ୍ତି ଯେ ସେମାନେ ମୋତେ ଛାଡ଼ି ଦେଇଛନ୍ତି, କିନ୍ତୁ ସେଇ ଏକା କଥା । ମୋଟ ଉପରେ ବାପାଙ୍କ ଭି.ଆଇ.ପି.ମାନଙ୍କ କୃପାରୁ ମୋ ପେଟ କେବେହେଲେ ଅପୋଷା ରହି ନାହିଁ ଏବଂ ଆଜି ମୁଁ ଜଣେ ବିଶିଷ୍ଟ ଶିଳ୍ପପତିଙ୍କର ସ୍ପେଶାଲ ପର୍ସନାଲ୍ ସେକ୍ରେଟେରୀ । ଖାସ୍ ତାଙ୍କର ସାଂସ୍କୃତିକ ସ୍ୱରୂପକୁ ଘଷିମାଜି ଟୋଳି ଧରିବାପାଇଁ ସଂସାର ଆଗରେ । କ୍ଷତି କ'ଣ ? ସେଇ ସଂସ୍କୃତପ୍ରେମୀ ଜେ. ମିଶ୍ର ପରା ଅନ୍ୟତମ ସଂସ୍କୃତିପ୍ରେମୀ ପିଣ୍ଟୁ ମହାପାତ୍ରଙ୍କ ବନ୍ଧୁ ! ଅବଶ୍ୟ ତା' ନ ହୋଇଥିଲେ ଯେ 'ଉତ୍କଳ କଳାକୁଞ୍ଜ' ମୋତେ ଚିହ୍ନି ନ ଥାଆନ୍ତା ତା' ନୁହେଁ । ସେମାନେ ନ ଚିହ୍ନିଲେ ବି ଆଉ କିଏ ଚିହ୍ନିଥାଆନ୍ତା । କିନ୍ତୁ ଲକ୍ଷ୍ୟ କରିବା

କଥା ଯେ ମୋର କବିତ୍ୱ ମଧ୍ୟ ମୋତେ ବାଟ କଢ଼େଇଛି, ଅଳ୍ପବହୁତ ରୋଜଗାର ଏବଂ ଯଥୋଚିତ ମର୍ଯ୍ୟାଦା ଆଣିଦେବାପାଇଁ । କେଉଁ ଅର୍ଥାଭାବ ବାଧି ନାହିଁ ମୋତେ ମୋ ସ୍ତ୍ରୀପିଲାଙ୍କ ସଂସାରକୁ ଚଳାଇବାରେ - ବାଧିଛି କି ?

ଦ୍ୱିତୀୟରେ ମୋ ସ୍ତ୍ରୀ ସରମା । ମୁଁ ତାକୁ ବାହାହେଲିଣି ପ୍ରାୟ ତିରିଶ ବର୍ଷ ହେଲା । ନା, ମୁଁ କୋଉ ଲଭ୍ କରି ବାହା ହୋଇ ନାହିଁ ତାକୁ । ମୋ ବାପାମାଆ ଏଇ ବାହାଘର ଠିକ୍ କରି ଦେଇଥିଲେ ସେତେବେଳର ଅଧିକାଂଶ ପୁଅଝିଅଙ୍କ ବାପମାଆଙ୍କ ପରି । କିନ୍ତୁ ସେଥିରେ ଯାଏ କେତେ ଆସେ କେତେ ? ମୁଁ ଯେ ସରକୁ ଭଲ ପାଏ, ମୂଳରୁ ଭଲ ପାଏ ଏବଂ ଶେଷ ଯାଏଁ ଭଲ ପାଇବି, ଏକଥା କ'ଣ ମୋତେ କହିବାକୁ ପଡ଼ିବ ? ହେଲେ ମନେରଖିବା ଉଚିତ ଯେ ମୁଁ କେବଳ ଜଣେ ସ୍ୱାମୀ ନୁହେଁ କି ଗୃହସ୍ଥ । ମୁଁ ମଧ୍ୟ ଜଣେ କବି । ସେହେତୁ ମୋର ଭଲପାଇବା ସର୍ବସାଧାରଣଙ୍କ ଠାରୁ ସ୍ୱଭାବତଃ ଅନେକ ଅଧିକ ଭାବଦଗ୍ଧ ଏବଂ ଅର୍ଥାନ୍ୱିତ ।

ହଁ, ବେଳବେଳେ ମୋର ଦୁଃଖ ହୁଏ, ଅକାରଣ ଦୁଃଖ, ଯେ ସର ମୋ ସାହିତ୍ୟକୁ ବୁଝେ ନାହିଁ । ବାହାଘର ପରେ ପରେ 'ମୋ କବିଟିଏ' କହି ମୋ ସାଙ୍ଗରେ କେତେ ଗେହ୍ଲେଇ ହେଉଥିଲା ସତ, ମୋର ନୂଆ ବହିଟିଏ ବାହାରିଲେ ତା'ର କପିଟିଏ ସେ ସଯତ୍ନରେ ତା' ଆଲମାରିରେ ସଜାଡ଼ି ରଖେ ଏବଂ ଏବେ ସେ ଅବଶ୍ୟ ମୋତେ କୁଣ୍ଢେଇ ପକେଇ କଂଗ୍ରାଚୁଲେଟ୍ କରିଥିଲା 'କଳାକୁଞ୍ଜ'ର ପୁରସ୍କାର ପାଇଲା ପରେ । କିନ୍ତୁ ମୋର କବିତା ପଢ଼ିବାରେ ତା'ର ତିଳେହେଲେ ଆଗ୍ରହ ନାହିଁ । ଦି'ଧାଡ଼ି ପଢ଼େ କେବେ କେମିତି ବଡ଼ ପାଟି କରି, ମୋତେ ଦେଖେଇଲା ପରି, କିନ୍ତୁ ତା'ପରେ ହେଁ ହେଁ ହୋଇ ହସେ । ଯେମିତିକି ସେ କିଛି ହେଲେ ବୁଝୁ ନାହିଁ ଏଇ ଅଗଡ଼ମ୍ ବଗଡ଼ମ୍, ହେଲେ ତାକୁ ଭଲ ଲାଗୁଛି । ସତରେ ଭଲ ଲାଗୁଛି ମ ! ଏହି ପରିସ୍ଥିତିରେ ସେ କବିତା ବହିଟାକୁ ମଧ୍ୟ ଖସେଇ ଦେଇପାରେ ତା' ହାତରୁ, ସିଏ ଯେଉଁଠି ହେଲେ ପଡୁ, ମୋ ବାହୁବଳୟ ଭିତରକୁ ଆସିବା ଲାଗି । ସେଇଠୁଁ ମୁଁ ବୁଝେ ଯେ ମୋର ଦୁଃଖ ଅକାରଣ, ନିହାତି ଅକାରଣ ।...

ଏହି ମର୍ମରେ 'ସବୁ ଠିକ୍ ଅଛି'ର ବ୍ୟାଖ୍ୟାବିନ୍ୟାସ କରିପାରନ୍ତେ ଜଗଦ୍‌କୃଷ୍ଣ ତାଙ୍କର ଏଇ ବୟସ ବେଳକୁ । ପିଲାମାନେ - ଦୀପ୍ତି, ତୃପ୍ତି ଏବଂ ତରୁଣ ମୋଟାମୋଟି ଯୋଗ୍ୟ ହୋଇଗଲେଣି । ଦୀପ୍ତି ବାହା ହୋଇଗଲାଣି । ତୃପ୍ତି ବାହାହେବ ଯଥା ସମୟରେ । ଏବଂ କଲେଜପଢ଼ା ତରୁଣ ଗୋଟାଏ ଜର୍ଣ୍ଣାଲିଷ୍ଟ ହେବ ବୋଲି କହୁଛି । ଫାଇନ୍ !

ନା, 'ସର ମୋତେ ବୁଝୁ ନାହିଁ ।' ଏଇ ଦୁଃଖ ଜଗଦ୍‌କୃଷ୍ଣଙ୍କ ପାଖ ମାଡ଼ି ନ ଥିଲା ତାଙ୍କୁ ପ୍ରାୟ ପଅଁଷଠି ବର୍ଷ ହେବାଯାଏଁ । କିନ୍ତୁ ସର ମୋ କବିତାକୁ ବୁଝୁ ନାହିଁ ବୋଲି

ନୁହେଁ, ସେ ମୋତେ ବୁଝୁ ନାହିଁ । ମୋ କବିପ୍ରାଣକୁ ବୁଝୁ ନାହିଁ । ସେଇ ଦୁଃଖ ଅଧିକ ମର୍ମନ୍ତୁଦ, କାରଣ କବିପ୍ରାଣର ରଙ୍ଗରସ କଅଣ ଓ କେମିତି କହୁଛ ଯେ ସରକୁ ତାହା ଦୃଶ୍ୟ ହେଉ ନାହିଁ ବୋଲି ବୁଝେଇ ହେବ ନାହିଁ କାହାକୁ ।

ତାଙ୍କୁ ବେଶି ଦୁଃଖ ଲାଗିଲା ଏଇଥିପାଇଁ ଯେ ସେ ଗୋଟାଏ ଭିନ୍ନ ଧାରଣା ମନ ଭିତରେ ପୋଷି ରଖିଥିଲେ ଆଜିଯାଏଁ । ଯେ ସର ମୋର କବିତାକୁ ବୁଝେ ନାହିଁ ସିନା, ସେ ମୋର କବିପ୍ରାଣକୁ ବୁଝିଛି । ନ ହେଲେ କ'ଣ ତା' ସ୍ୱାମୀର ଯେଉଁ ସମ୍ପର୍କ ଗଢ଼ି ଉଠିଲା ଆପେ ଆପେ କେତେକ ଅନ୍ୟ ସ୍ତ୍ରୀଙ୍କ ସାଙ୍ଗରେ, ବିଶେଷତଃ ସୁପ୍ରିୟା ସାଙ୍ଗରେ (ଯେତେବେଳେ ମୋତେ ପଇଁତ୍ରିଶ ବର୍ଷ ହୋଇଥିଲା), ଆଉ ମିସେସ୍ ନାଗ୍‌ଙ୍କ ସାଙ୍ଗରେ (ଏଇ ସାତ ଆଠବର୍ଷ ତଳେ), ତା'ର ସୁରାକ୍ ପାଇଲା ପରେ ମଧ୍ୟ ସେ ତାଙ୍କୁ ଏତେ ସହଜରେ ଛାଡ଼ିଦେଇ ଥାଆନ୍ତା ? କିନ୍ତୁ ସେ ଯତ୍‌ସାମାନ୍ୟ ରାଗରୁଷା ପରେ ଚୁପ୍ ହୋଇ ରହିଲା, ଏବଂ ଅବିଳମ୍ବେ ଯଥା ପୂର୍ବଂ ତଥା ପରଂ । ସତେକି ତା' ସ୍ୱାମୀର କବିପ୍ରାଣ ଯୋଗୁଁ ଏମିତି ଭୁଲ୍‌ଭଟକା ହୋଇପାରେ ବେଳେ ବେଳେ, ଯାହା ଧର୍ତ୍ତବ୍ୟ ନୁହେଁ । କାରଣ ସେଇ ପ୍ରାଣର କଳ୍ପନା ଯେତେବେଳେ ଲୁଆରିଆ ହୋଇଉଠେ, ସେ ଏଇ ଶୁଭାକାଂକ୍ଷିଣୀମାନଙ୍କୁ କେବଳ ଅନ୍ୟତମ, ହେଲେ ସ୍ତ୍ରୀଲିଙ୍ଗବିଶିଷ୍ଟ 'ଫ୍ୟାନ୍' ବୋଲି ଭାବିପାରେ ନାହିଁ । ତା'ର ମନେହୁଏ ସେମାନେ ଦେବବାଳା । ଦେଖ ସେମାନେହିଁ ବୁଝିଛନ୍ତି ତା' କବିତାରେ ଥିବା ବିଷାଦ, ସ୍ୱର୍ଗୀୟ ବିଷାଦ ଏବଂ ଆସିଛନ୍ତି ତାକୁ ଆହୁରି ବୁଝିବା ଲାଗି । ଅନୁଭବ କରିବା ଲାଗି । ଅବଶ୍ୟ ସେଇ ବିଷାଦକୁ ଦୂର କରି ହେବ ନାହିଁ (କେଉଁ କବି ଭଲା ଚାହିଁବ ତାହା), କିନ୍ତୁ ସହ-ଅନୁଭବର ସାଥୀଭାବ କ'ଣ ସ୍ୱାଗତଯୋଗ୍ୟ ନୁହେଁ ?

ମନେଥିବ ସୁପ୍ରିୟା ଥିଲା ତାଙ୍କ ଆଦ୍ୟଯୌବନର ପାଠିକା, ଯେତେବେଳେ ସେ ନୂଆ ନୂଆ କବିତା ଲେଖୁଥିଲେ ଏବଂ ସେ ଆସିଥିଲା ତାଙ୍କୁ ବଧେଇ ଦେବା ଲାଗି ତାଙ୍କର ସଦ୍ୟପ୍ରକାଶିତ କବିତାଟିଏ ପଢ଼ି । କିନ୍ତୁ ସେତେବେଳେ ମୁଗ୍ଧା ସେଥିର ବିଷାଦ ସୁନ୍ଦରଭାବ ବିଷୟରେ କିଛି କହି ନ ଥିଲା ତାଙ୍କୁ । ବୋଧହୁଏ କହିପାରିଲା ନାହିଁ, କାରଣ ସେଥିକୁ ଯଥାଯୋଗ୍ୟ ଭାଷା ନ ଥିଲା ତା' ପାଖରେ । ପରେ ଆସିଲା ଯେତେବେଳେ ସେ କେଉଁ ସ୍କୁଲ୍‌ରେ ମାଷ୍ଟରାଣୀଟିଏ ହେଲା ଏବଂ ଆସିଲା ତାଙ୍କ ପାଖକୁ ଥରକୁ ଥର । ଭାଉଜଙ୍କ ଆତିଥ୍ୟ ସ୍ୱୀକାର କରିବା ସହ କୃଷ୍ଣଭାଇନାଙ୍କ କାବ୍ୟିକ ବିଷାଦର ସହଅନୁଭବୀ ହେବାପାଇଁ । ସେଇଠୁଁ ଇତିହାସ । ହେଲେ ତା'ର କିୟଦଂଶ ଭାଉଜଙ୍କ ନଜରରେ ପଡ଼ିଥିଲା ନିଶ୍ଚୟ । ସେ ବଦଳି ହୋଇ ଚାଲିଗଲା ଆଉ କେଉଁଠିକି, ଏବଂ କଥାଟା ଛିଣ୍ଡିଗଲା । କିନ୍ତୁ ତା'ରି ପରି, ଅର୍ଥାତ୍ ସେଇ ଉଦ୍ଦେଶ୍ୟ ନେଇ ଆସିବାର ଥିଲା ଆଉ ଜଣକର । ମିସେସ୍ ପୁଷ୍ପା ନାଗ୍ । ବିବାହିତା ମହିଳା । ସାମାଜିକ ସ୍ତରରେ ଅନ୍ୟତମ ବନ୍ଧୁପତ୍ନୀ

ହିସାବରେ ଗଣା । ସେ କବିଙ୍କର ବିଷାଦକୁ ନେଇ ଟିକିଏ ଥଟ୍ଟାନକଲ ହେବାକୁ ଭଲ ପାଆନ୍ତି । ଯଥା : ଆଚ୍ଛା ମିଷ୍ଟର୍ ପଣ୍ଡା ? ଆପଣଙ୍କର ଗୁଣ୍ଡୁଚି ହଜାରେ ଗଛକୋରଡ଼ର ତାତି ଆଉ ହେମାଳକୁ ଛୁଇଁ ଛୁଇଁ ଚାଲିଗଲା, ହେଲେ ମନଲାଖି ଥାନଟିଏ ମିଳିଲା ନାହିଁ ତାକୁ, ଯାହାକୁ ସେ ନିଜର ବୋଲି ଭାବିପାରିଥାଆନ୍ତା ? କିନ୍ତୁ ମୋର ଟିକିଏ ହେଲେ ସହାନୁଭୂତି ନାହିଁ ତା' ପ୍ରତି । ଏଇ ଦଶା ହୁଏ ତୋ ଭଳିଆ ଅସନ୍ତୋଷିଆ ପ୍ରାଣୀମାନଙ୍କର ! କ'ଣ କହୁଛନ୍ତି ମିସେସ୍ ପଣ୍ଡା ? କିନ୍ତୁ ମିସେସ୍ ପଣ୍ଡାଙ୍କର ନଜରରେ ମଧ ପଡ଼ିଥିଲା ଯଥାକ୍ରମେ, କେଉଁଭାବରେ ସେ ଖୁସି କରିବାକୁ ଚାହିଁଥିଲେ ତାଙ୍କର ଅସନ୍ତୋଷିଆ କବି ସ୍ୱାମୀଟିକୁ, ଯାହା ବେଶିଦୂର ଆଗେଇ ଯାଇ ପାରିଲା ନାହିଁ ଯାହାହେଉ, ଯେକୌଣସି କାରଣରୁ ।

ହେଲେ ସବ ସେମାନଙ୍କୁ, ସେମାନଙ୍କୁ ନ ହେଲେ ମଧ ମୋତେ କ୍ଷମା କରିଦେଇ ପାରିଛି । ଅଭିଯୋଗକୁ ଠିକଣା ଉତ୍ତର ମିଳି ନାହିଁ, କିନ୍ତୁ ରାଗଅଭିମାନ ବେଶିଦିନ ତିଷ୍ଠି ରହିପାରି ନାହିଁ । ଯେହେତୁ ଆମ ଭିତରେ ରାଶି ରାଶି ଭଲପାଇବା । କିନ୍ତୁ ସେଇ ଆଜି ମୋ ବୁଢ଼ା ବୟସରେ ବୁଝିପାରୁ ନାହିଁ ମୋତେ ? କହୁଛି କ'ଣ ନା :

- ତମ ହାତଗୋଡ଼ କ'ଣ ଛିଣ୍ଡି ପଡୁଛି ଏତିକି ଟିକିଏ କାମ କରିବାପାଇଁ ? ଝରକାକବାଟ ବି ଠିକଣାରେ ବନ୍ଦ କରିପାରୁ ନାହଁ ଶୋଇବା ଆଗରୁ ?

- ମୋତେ କ'ଣ ତମର କିଣା ଚାକରାଣୀ ବୋଲି ପାଇଛ ଯେ ମୁଁ ତମ ଟେବୁଲ୍‌ର କାଗଜପତ୍ର ଆଳିମାଳିକାକୁ ସଜାଡୁଥିବି ପ୍ରତ୍ୟେକ ଦିନ ?

- ତମ ମୁହଁକୁ ଲାଜ ନାହିଁ ଟିକିଏ ଯେ ତମ ଗେହ୍ଲା ଝିଅ ତୃପ୍ତି, ଯାହାକୁ ତମେ ହିଁ ବିଗାଡ଼ିଛ, ତା'ର ଖୋଲା ଚିଠି ଏମିତି ପଡୁଛି ଏଠି ସେଠି ? କ'ଣ ବାହାର ଲୋକେ ଜାଣିବା ଦରକାର ସେ ଯେଉଁ କୀର୍ତ୍ତି କରିଛି, ଆଉ ତା'ର କେତେ ଗର୍ବ ସେଥିରେ ?

- ତମେ କ'ଣ ସତରେ କାଲ ହୋଇଗଲଣି ନା କ'ଣ ମ ? ମୁଁ କେବେଠୁଁ ଲଗେଇଛି ତମ ସାଙ୍ଗରେ, ଯେ ମିସ୍ତିଟିଏ ଡାକି ବାରିପଟର ଭଙ୍ଗା କାନ୍ଥଟାକୁ ଯୋଡ଼ିଦେବା ଲାଗି । ସହଜେ ତ'ମୋତେ ପକେଇ ରଖିଛ ତମର ଏଇ ପୈତୃକ ଭଙ୍ଗାଦଦରା ପୁରୁଣା ଘରେ...

ଏବଂ ପ୍ରାୟ ପ୍ରତ୍ୟେକ ଗଞ୍ଜଣାର ଶେଷ ପଦ ହେଉଛି - କ'ଣ ମିଳୁଛି ତମକୁ ସେଇ ଚୋପାଛଡ଼ା କବିତାରୁ, ଯେ ସେଇଠି ବସି ଗାରଉଛ ଏଣୁତେଣୁ ଦିନଟା ଯାକ, ଆଉ କିଛିହେଲେ ତମ ମୁଣ୍ଡରେ ପଶିବାକୁ ନାହିଁ ? ଖାଲି ଏତିକି ନୁହେଁ । ମଧ କହିପାରିଲା ଦିନେ, ଯେ ସେ ଜାଳିପୋଡ଼ି ଦେବ ମୋର ଯେତେକ କାଗଜଗଦା, ବହି ଆଉ ଖାତା, ଆଉ କବିତା !

ଇସ୍ ! ଏତେ ତଳକୁ କେମିତି ଖସି ଆସି ପାରିଲା ସର ? ତମେ କ'ଣ ସତେ ଏଡ଼େ ଅର୍ଡ଼ିନାରୀ ଯେ ଏଇସବୁ ତୁଚ୍ଛ ଘରକରଣା କଥାକୁ ନେଇ ଏଭଳି ଖୁଞ୍ଚା ଦେଇ ପାରୁଛ ମୋତେ ? ଏବଂ ଏଭଳି କଟୁ ଭାଷା ? କେମିତି ଭଲା ତମେ ତମ ସ୍ୱାମୀର କବିପ୍ରାଣକୁ ଏତେ ଅପମାନ, ଏତେ କଷ୍ଟ ଦେଇ ପାରୁଛ ? ଯାହାକୁ ତମେ ଜାଣିଛ ଆଜିକୁ ଚାଳିଶ ପଚାଶ ବର୍ଷ ହେଲା ?

ନା ତମେ ବଦଳି ଯାଇଛ ? କିନ୍ତୁ କାହିଁକି ? କାହିଁକି ??

ହଁ । ପରିସ୍ଥିତି ଅବଶ୍ୟ କିଛି ବଦଳିଛି, ଏବଂ ସେହେତୁ ପୂର୍ବର ସରମା ଅଳ୍ପବହୁତ ବଦଳି ଯାଇଛନ୍ତି । ଏବଂ ଏହି ପରିବର୍ତ୍ତିତ ପରିସ୍ଥିତି ଜଗଦ୍‌କୃଷ୍ଣଙ୍କର ଅଜଣା ନ ଥିଲା ।

ଏବେ ତାଙ୍କୁ ବୁଝିବାକୁ ପଡ଼ିଛି ଯେ ଦିହିଁଙ୍କ ବାର୍ଦ୍ଧକ୍ୟ ହେତୁ ଦେହର ଆକର୍ଷଣ କ୍ରମଶଃ ଚାଲିଗଲାଣି, ପରସ୍ପର ମଧ୍ୟରେ । ସେହେତୁ କୋଉ କଥାକୁ 'ସରି !' ବୋଲି କହି ଚଟ୍‌କିନି ଆଡ଼େଇ ଦେଇ ହେଉ ନାହିଁ ଦେହର ଡାକ ଶୁଣିବା ଲାଗି । ସେଭଳି କୌଣସି ଡାକ ଶୁଣିଲା ପରି ଲାଗୁ ନାହିଁ ଯାଙ୍କୁ କିମ୍ୱା ତାଙ୍କୁ । ତେଣୁ କଥାଟା ଲମ୍ୱି ଲମ୍ୱି ଯାଉଛି ଓ ଜଗଦ୍‌କୃଷ୍ଣଙ୍କୁ ଆହୁରି ଆହୁରି ବ୍ୟସ୍ତ ଲାଗୁଛି । ଏବଂ ଏ ଦିଗରେ ରାତିଗୁଡ଼ାକ ମଧ୍ୟ ଦିନଠାରୁ ବିଶେଷ ଭିନ୍ନ ବୋଲି ମନେହେଉ ନାହିଁ । ଦେହର ସାନ୍ନିଧ୍ୟ ଓ ରାତିର ନିରୋଳା ସତ୍ତ୍ୱେ ।

ଦ୍ୱିତୀୟରେ ଆର୍ଥିକ ପରିସ୍ଥିତି । ଜଗଦ୍‌କୃଷ୍ଣ ଚାକିରିରୁ ଅବସର ନେଲେଣି, ଏବଂ ଯେଉଁ ପେନ୍‌ସନ୍ ମିଳୁଛି ତାଙ୍କୁ, ଚାକିରିର ଶେଷପର୍ଯ୍ୟାୟରେ ମିଳିଥିବା 'ସ୍ପେଶାଲ୍' ହେଲେ ଦ୍ୱିତୀୟ ଶ୍ରେଣୀର ପଦବୀରୁ, ତାହା ଆଦୌ ଯଥେଷ୍ଟ ନୁହେଁ ଘରଟାକୁ ସୁଚାରୁରୂପେ ଚଳାଇବାପାଇଁ । ଅନ୍ତତଃ ଯେଉଁଭଳି ଚଳଣିକୁ ସରମା ସୁଚାରୁ ଭଦ୍ରଲୋକସମ୍ମତ ଚଳଣି ବୋଲି ଭାବନ୍ତି । ବାପା ମଧ୍ୟ ନାହାନ୍ତି ଆଉ, ତଥା ତାଙ୍କ ଭି.ଆଇ.ପି.ମାନଙ୍କ ଠାରୁ କିଛି ବିଶେଷ ଅନୁଗ୍ରହ ମିଳିଯିବାର ଆଶା ।

କିନ୍ତୁ ଏଇ ଦୁଃଖଦ ପରିସ୍ଥିତିର ଶେଷକଥା ହେଉଛି ଏଇ ଯେ ଜଗଦ୍‌କୃଷ୍ଣ କବି ବୋଲି ସୁପରିଚିତ ହୋଇ ସାରିଥିଲେ ମଧ୍ୟ, କବି ହିସାବରେ ତାଙ୍କର ପ୍ରତିଭା ଯଥେଷ୍ଟ କମି ଗଲାଣି । ଏଇଥିପାଇଁ ନୁହେଁ ଯେ ବୁଢ଼ାକବିଙ୍କର କବିତା ପୁରୁଣା ଘଷରା ହୋଇଗଲାଣି । ତା'ଠାରୁ ଅଧିକ ମାରାତ୍ମକ ହେଉଛି ଏଇ ଯେ ଆଧୁନିକ ମାନେ ତାକୁ 'ପିଲାଳିଆ' ବୋଲି କହୁଛନ୍ତି । ଆଜିର କବିତା ଇଣ୍ଟେଲେକ୍‌ଚୁଆଲ୍ । ଯେଉଁଥିରେ ଭାବିଚିନ୍ତି କିଛି କହିବା କଥା ସମାଜ, ସଂସାର, କି ମଣିଷଦଶା ବିଷୟରେ । ତା'ର କାମ ନୁହେଁ ପାଠକପାଠିକାମାନଙ୍କୁ ଶୁଣେଇବ ତମ ପ୍ରାଇଭେଟ୍ ବିଷାଦତତ୍ତ୍ୱ ତା'ର ସଙ୍ଗୀତ କି ଛବି ଯେତେ ସୁନ୍ଦର (ପିଲାଳିଆ ଅର୍ଥରେ ସୁନ୍ଦର) ବୋଲି ମନେହେଉ ପଛକେ । ହଁ, କିଛି

ବେଶି ସମୟ ଲାଗିବ ଆଧୁନିକ କବିତାକୁ ବୁଝିବାଲାଗି । କିନ୍ତୁ ସେତିକି ଦାମ୍ ଦେବାକୁ ପଡ଼ିବ ତମକୁ, ସେଇ ଚିନ୍ତାଧାରାର ଅନୁଗାମୀ ଏକ ବିଶିଷ୍ଟ ବୌଦ୍ଧିକ ଆନନ୍ଦର ଅଧିକାରୀ ହେବାପାଇଁ । ଜଗତ୍‌କୃଷ୍ଣ ମୋଟାମୋଟି ବୁଝି ପାରିଛନ୍ତି ଯେ ଏଇ ପରିବର୍ତ୍ତନ ଆସିଯାଇଛି ଆମ କବିତାରେ । ଯେଉଁଥିପାଇଁ ସେ ବିଗତ ଅତୀତର ଏକ ଗୀତିକବି ମାତ୍ର । ଯାହାର ଅବଶ୍ୟ ସ୍ଥାନ ଅଛି ଆମ ସାହିତ୍ୟର ଇତିହାସରେ । ଯାହାର କବିତା ମଧ୍ୟ ବାହାରେ ବେଳେବେଳେ ବିଭିନ୍ନ ପତ୍ରପତ୍ରିକାରେ । ହେଲେ ଯାହାକୁ ଜାତୀୟସ୍ତରରେ କିମ୍ବା କେଉଁ ଆଖିଦୁରୁଶିଆ ପୁରସ୍କାରଟିଏ ମିଳି ନାହିଁ 'କଳାକୁଞ୍ଜର' ପୁରସ୍କାର ପାଇଲା ଦିନୁ । ହେଲେ ଉପାୟ କ'ଣ ? ତା' ବୋଲି କ'ଣ ସେ ନିଜ କବିତାକୁ ବଦଳାଇବାକୁ ଯିବେ ? ନା ଆଉ କବିତା ଲେଖିବେ ନାହିଁ ?

ଜଗତ୍‌କୃଷ୍ଣ ଏହି ମର୍ମରେ ବୋଧ ଦିଅନ୍ତି ନିଜକୁ ଏବଂ ଲେଖି ଯାଆନ୍ତି । ଏବଂ ସରମାଙ୍କର ମନେହୁଏ ଯେ ତୁଚ୍ଛାଟାକୁ ରାଂପୁଛନ୍ତି ଏମିତି ବସି ଦିନଟାଯାକ । ଏବଂ ମହା ଦୁଃଖ ହୁଏ ଜଗତ୍‌କୃଷ୍ଣଙ୍କ ମନରେ, ତାଙ୍କ ଗଞ୍ଜଣା ଶୁଣିଲାରୁ ଯାହାର ଘୋଷା ହେଉଛି - ସର ବୁଝୁ ନାହିଁ ମୋତେ !

ଏଇ ଦୁଃଖ ବଢ଼ି ବଢ଼ି ଗଲା ଯେତେବେଳେ ତାଙ୍କ ବାର୍ଦ୍ଧକ୍ୟ ଯୋଗୁଁ ତାଙ୍କ ଶାରୀରିକ ଅକ୍ଷମତା ମଧ୍ୟ କେତେ ନୂଆ ନୂଆ ରୂପ ଧାରଣା କଲା । ତାଙ୍କ ଦୃଷ୍ଟିଶକ୍ତି ଯଥେଷ୍ଟ କମିଗଲାଣି, ଏବଂ ଚଷମାର ପାୱାର ତା' ସାଙ୍ଗରେ ତାଳ ଦେଇ ପାରୁ ନାହିଁ । ସାଙ୍ଗକୁ କାନକୁ ଭଲ କରି ଶୁଭୁ ନାହିଁ ଆଜିକାଲି । ଏହି ଅବସ୍ଥାରେ ସେ ଯେତେବେଳେ କୌଣସି ଗୋଟାଏ ଗଞ୍ଜଣା ଭଲ ଭାବରେ ଶୁଣି ନ ପାରି ଏଁ ? 'ଏଁ ?' ବୋଲି ହେଲେ ଏବଂ ସରମା ତାଙ୍କୁ ଛିଗୁଲେଇଲା ପରି 'ଏଁ-ଏଁ !' କହିଲେ, ଜଗତ୍‌କୃଷ୍ଣ ସହିପାରିଲେ ନାହିଁ ସେଇ ଅପମାନ ଏବଂ ତାଙ୍କୁ ପାହାରେ ପକେଇଲେ ତାଙ୍କ ହାତରେ ଧରିଥିବା କବିତା ଖାତାରେ ।

ସେଇଠୁଁ ସରମା ତାଙ୍କୁ ଅନେଇଲେ ଫଡ଼ାଫଡ଼ା ଚାହାଣିରେ, ତାଙ୍କ ଆଖିକୁ ବିଶ୍ୱାସ କରି ନ ପାରିଲା ପରି । ଶେଷକୁ ତମେ ମୋତେ ପିଟିଲ, ତମେ ତମ ସ୍ତ୍ରୀକୁ ପିଟିଲ ! - ଏଇ ଭାବରେ ।

ଜଗତ୍‌କୃଷ୍ଣଙ୍କର କୌଣସି ଅସୁବିଧା ହେଲା ନାହିଁ ସେଇ ଚାହାଣିର ଭାଷାକୁ ବୁଝିବାରେ ।

ସତରେ ଏଇଆ ହେଲା ? ଅଶୀ-ଏକାଅଶୀ ବୟସର ସୁପ୍ରସିଦ୍ଧ କବି, ଜଗତ୍‌କୃଷ୍ଣ ପଣ୍ଡା, ହେଲା ଏବେ ସେଯୁଗର ଗୀତିକବି ଜଣେ, ସେ ତାଙ୍କ ସ୍ତ୍ରୀଙ୍କୁ ପିଟିଲେ ? ନା, ଏଇ ଅସଭ୍ୟ ଅସୁନ୍ଦର କଥାଟା ମୁଁ କରି ନାହିଁ ଆଉ କିଏ କହିଥିବ ପରା ବୋଲି, ସେ ବାରମ୍ବାର

କହିହେଲେ ନିଜକୁ । କିନ୍ତୁ ସରମା ବାରମ୍ବାର ଚେତାଇ ଦେଲେ ସ୍ୱାମୀଙ୍କୁ ତାଙ୍କ ବ୍ୟବହାର ଦ୍ୱାରା ଯେ ଏହାହିଁ ସତକଥା । ତମେଇ କରିଛ ଏଇ କୁକର୍ମ । ସେ ତାଙ୍କ ସାଙ୍ଗରେ ଭଲ କରି କଥା ପଦେ କହିବାକୁ ନାରାଜ । ଏବଂ ଘୁଞ୍ଚିଯାଆନ୍ତି, ସ୍ୱାମୀ ତାଙ୍କ ଆଡ଼କୁ ହାତ ବଢ଼େଇଲେ । ହାତକୁ ଫେରାଇ ଦଅନ୍ତି ।

ତାଙ୍କର ଦୋଷୀ ଭାବ ଉତ୍କଟ ହୋଇ ଉଠିଲା ଯେତେବେଳେ ଜଗତ୍‌କୃଷ୍ଣଙ୍କ ମନରେ ଆସିଲା ଯେ ସର ମଧ ଭାବୁଥିବ ସେଇ ଏକା କଥା, ଯେ ମୁଁ ତାକୁ ବୁଝୁ ନାହିଁ । ବୁଝୁ ନାହିଁ ଯେ ସେବି ବୁଢ଼ୀ ହେଲାଣି, ଆଉ ଘରକାମକୁ ପାରୁ ନାହିଁ ଆଗଭଳି । ତା'ଛଡ଼ା ସେ ବେଶି ବେମାର ରହୁଛି ମୋ ଠାରୁ । କେତେବେଳେ ଶ୍ୱାସରୋଗ ଓ କେତେବେଳେ ଆଣ୍ଠୁଗଣ୍ଠିବାତର ପ୍ରକୋପ, କିମ୍ବା ଆଉ କିଛି । ସେହେତୁ ତା'ର ଧୈର୍ଯ୍ୟ ଓ ସହିଷ୍ଣୁତାର ପାରା ଅନେକ ତଳକୁ ଖସି ଆସିଲାଣି । ହେଲେ ମୁଁ ବୁଝୁ ନାହିଁ ସେକଥା । ମୁଁ ଭଲ କି ମୋ କାଗଜକଲମ, ଆଉ ମୋ ଛେନାଗୁଡ଼ କବିତା !

... ହଁ, ଏଇଆ ସେ ଭାବୁଥିବ । ତା'ଛଡ଼ା, କବି ଜଗତ୍‌କୃଷ୍ଣ, ତୁ ସିନା ତୋର ସେଇ ଛେନାଗୁଡ଼ କି ଅଧମତାରଣ କବିତାକୁ କୁଣ୍ଢେଇ ଧରିଛୁ, ତୋର ପରମ ସାଥୀ ବୋଲି, ତୋ ଛଡ଼ା ତା'ର ଆଉ  କିଏ ଅଛି କହଲୁ ? ପିଲାମାନେ ନୀଡ଼ ଛାଡ଼ି ପଳେଇ ଗଲେଣି କିଏ କୁଆଡ଼େ । କିଏ ଭଲରେ ଭଲରେ ଗଲା, ତ ତୃପ୍ତି ପରି ଝିଅଟା ଘରୁ ପଳେଇ ଗଲା ଗୋଟାଏ ବଜାରି ଟୋକା ସାଙ୍ଗରେ, ମେଞ୍ଚାଏ କାଳି ବୋଳିଦେଇ ତା' ମାଆର ମୁହଁରେ । ମାଆକୁହିଁ ଦୁନିଆ ଦୋଷଦିଏ ଝିଅ କିଛି ଖରାପ କାମ କଲେ, ଏତିକ ନିଶ୍ଚୟ ଜଣାଥିବ ତୋତେ । ଏଇଥିରୁ ବୁଝୁଥିବୁ ସେ କେତେ ଏକୁଟିଆ ମନେକରେ ନିଜକୁ । ଏବଂ ଦିନସାରା ତୋତେ ଯେତେ ଗାଳିମନ୍ଦ ଦେଲେ ବି ସେ କାହିଁକି କୁଣ୍ଢେଇ ଧରେ ତୋତେ ଅନେକ ସମୟରେ, ରାତିର ଶୋଇବା ଶେଯରେ । ଆରେ, ଦେହର ଆକର୍ଷଣ ଆଉ ନାହିଁ ସିନା, ସ୍ୱାମୀର ଚଉଡ଼ା ଛାତି ନାମକ ବସ୍ତୁର ଆବଶ୍ୟକତା ଚାଲିଯିବ କେମିତି ଆମ ସ୍ତ୍ରୀମାନଙ୍କ ପାଇଁ, ବିଶେଷତଃ ତାଙ୍କର ଏଇ ବୟସରେ, ଏହି ପରିସ୍ଥିତିରେ ? ଏତିକ  କ'ଣ ତୋ ମୁଣ୍ଡରେ ପଶୁ ନାହିଁ ଜଗତ୍‌କୃଷ୍ଣ, ଯେହେତୁ ତୁ ଜଣେ କବି ?

ଆଃ ! କିଏ କହିଲା ମୁଁ ବୁଝୁ ନାହିଁ ବୋଲି ? ଶୁଣ, ମୁଁ ବି କ'ଣ ଏକୁଟିଆ ମନେକରୁ ନାହିଁ ନିଜକୁ ? କବି ଜଗତ୍‌କୃଷ୍ଣକୁ ଆଉ କେତେଜଣ ଖୋଜୁଛନ୍ତି, ଲୋଡ଼ୁଛନ୍ତି, ସଭାସମିତିକୁ ଡାକୁଛନ୍ତି ? ଅବା କୋଉ ପାଠକ, ସ୍ତାବକ (ସୁପ୍ରିୟା ଓଗେର ଦୂରର କଥା) ଆସୁଛି ତା' ପାଖକୁ ତା' ବିଷାଦରେ ଭାଗୀ ହେବାପାଇଁ ? ନା, ଆଉ କେହିହେଲେ ନାହାନ୍ତି ମୋ ପାଇଁ, କେବଳ ଇତିହାସ ଛଡ଼ା । ଖାଲି ଏଇ ଜଣକ, ମୋର ଷାଠିଏ ବର୍ଷ ତଳର ପରିଣୀତା । ଜୀବନସାଥୀ । ସେଇ ପ୍ରଥମ, ତା' ପରେ ଯାଇଁ ମୋର କବିତା, ଯାହା ବିନୁ ମୋର ଗତି ନାହିଁ ।

ମୋତେ ବିଶ୍ୱାସ କର, ମୁଁ ବି ତା'କୁ ଖୋଜେ, ଲୋଡ଼େ । ଆଉ ମୁଁ ତାକୁ ଶୁଣାଇବାକୁ ଚାହେଁ କିଛି, ଆମ ପରିଣତ ଜୀବନର ସାଥିତ୍ୱ ବିଷୟରେ । କିନ୍ତୁ ସେ ମୋତେ ସମୟ ଦେଲା କୋଉଠୁ ? ମିନିଟିଏ ବସୁଛି କୋଉଠି ମୋ ପାଖରେ, ଯେମିତିକି ମୁଁ ଟିକିଏ ସଜାଡ଼ି ନେବି ନିଜକୁ, ମୋର କଥାକୁହା ପୂର୍ବରୁ ?

କିନ୍ତୁ ଅନୁତପ୍ତ ଜଗତ୍‌କୃଷ୍ଣ ଯେତେ ଚେଷ୍ଟାକଲେ ଏହି ଘଟଣା ପରେ, ସରମାଙ୍କର ମାନଭଞ୍ଜନ କରିବାପାଇଁ, କେଉଁଥିରେ କିଛି ଲାଭ ହେଲା ନାହିଁ । ସରମାଙ୍କ ହାତ ଧରା ଦେଲା ନାହିଁ ତାଙ୍କ ହାତରେ, ତାକୁ ଟିକିଏ ଆଉଁଶି ଦେବାପାଇଁ, ସେଇଠୁଁ ଧୀରେ ସୁସ୍ଥେ ପଦୁଟିଏ କିଛି କହିବା ଲାଗି ।

ତଥାପି ଆଶା ଥିଲା । ମଣିଷ ମନର ଆଶା ମରେ ନାହିଁ ସହଜେ । କିନ୍ତୁ ସରମା ନିଜେ ଚାଲିଗଲେ ଛଅମାସ ନ ଯାଉଣୁ । ଶ୍ୱାସ ଏମିତି ବଢ଼ିଗଲା ହଠାତ୍, ଯେ ଅକ୍‌ସିଜେନ୍ କୁଳେଇଲା ନାହିଁ ତାକୁ ଏବଂ ସେ ଆଖି ବୁଜି ଦେଲେ । ଏବଂ ଜଗତ୍‌କୃଷ୍ଣଙ୍କ ହାତରେ ପଡ଼ି ରହିଲା ତାଙ୍କର ଅସାଡ଼ ହାତ, ତାକୁ ମନଇଚ୍ଛା ଆଉଁଶିବା ପାଇଁ ।

ଜଗତ୍‌କୃଷ୍ଣ କାନ୍ଦିଲେ ପିଲାଙ୍କ ପରି । ଅନେକ କାନ୍ଦିଲେ । ମଧ୍ୟ ରାଗିଲେ ସରମାଙ୍କ ଉପରେ, ଯେ ତାଙ୍କୁ ଛାଡ଼ିଦେଇ ଗଲା ଏମିତି, ତାଙ୍କ ଏକୁଟିଆପଣକୁ ପରୁଆ ନ କରି ।

ସେଇ ରାଗର ପରାକାଷ୍ଠା ଦେଖାଇଲା ପରି ସେ ଅଡ଼ିବସିଲେ ଯେ ସେ ଯିବେ ନାହିଁ କୋଉ ପିଲା ପାଖରେ ଯାଇ ରହିବାକୁ । ଯଦିଓ ପିଲାମାନେ କେହି ହେଳା କରି ନ ଥିଲେ ତାଙ୍କୁ ସେଦିଗରେ ପ୍ରବର୍ତ୍ତାଇବା ପାଇଁ । ଯେ ଚାଲ ଆମ ପାଖରେ ରହିବ । ଅନ୍ତତଃ ତମ ମନଟା ଟିକିଏ ହାଲୁକା ଲାଗିବ ତମ ନାତିନାତୁଣୀଙ୍କ ସାଙ୍ଗରେ ଖେଳି । ହେଲେ ଜଗତ୍‌କୃଷ୍ଣଙ୍କର ସେଇ ଏକା ଜିଦି ଯେ ମୁଁ ଏକୁଟିଆ ରହିବି ।

ପିଲାମାନେ ଅବଶ୍ୟ ତାଙ୍କ ବାପାବୋଉ ଉଭୟଙ୍କୁ ଭଲ ପାଆନ୍ତି । କିନ୍ତୁ କହିଲେ ଭୁଲ୍ ହେବ ନାହିଁ ଯେ ଅନେକାଂଶରେ ବୋଉ ସରମାଙ୍କ ଦ୍ୱାରା ପ୍ରଭାବିତ ହୋଇ ସେମାନଙ୍କ ମନରେ ମଧ୍ୟ ଗୋଟାଏ ଧାରଣା ଆସି ଯାଇଥିଲା ଯେ ବାପା ଆହୁରି କିଛି କରିପାରି ଥାଆନ୍ତେ ଆମପାଇଁ । ବାହ୍ମଣିଆ ପୁରୋହିତ ବଂଶଟାକୁ ଯେତେ ଉପରକୁ ନେଇ ଯାଇଥିଲେ ଜେଜେ, ବାପା ସେଇ ପ୍ରତିଶ୍ରୁତି ରକ୍ଷା କରି ପାରିଲେ ନାହିଁ । ଏବଂ ତାଙ୍କ ନିଜ ଦୋଷରୁ । ନ ହେଲେ ପୁଅକୁ ବାହାରକୁ ପଠାଇ ପାରି ନ ଥାଆନ୍ତେ ମ୍ୟାନେଜ୍‌ମେଣ୍ଟ ପଢ଼ିବା ପାଇଁ ଯାହା ସେ ଚାହୁଁଥିଲା ? ଦୀପ୍ତି କୋଉ ବ୍ୟାଙ୍କ କିରାଣିଟିର ହାତ ନ ଧରି ବଡ଼ ଘରେ ବାହା ହୋଇପାରି ନ ଥାଆନ୍ତା ? ଆଉ ତୃପ୍ତିର କ'ଣ ଏମିତି ବଦନାମିଆ ହେବାଯାଏଁ ଯାଇ ଥାଆନ୍ତା ! ଏଇ ଚାପା ଅଭିଯୋଗକୁ ମଧ୍ୟ ଜଗତ୍‌କୃଷ୍ଣ ସ୍ୱୀକାର କଲାପରି ମନେହେଲା ଯେତେବେଳେ ସେ ଅଡ଼ିବସିଲେ ଯେ ସେ ଏଇଠି

ରହିବେ ଏକୁଟିଆ । ଏଇ ପୈତୃକ ଭଙ୍ଗାଦଦରା ଘରେ । ... ମୁଁ ତମମାନଙ୍କ ପ୍ରତି ଅନ୍ୟାୟ କରିଛି । ହଉ, ହେଲା । କିନ୍ତୁ ମୁଁ ତମ କାହାରି ଦୟା କି ଅନୁଗ୍ରହର ପ୍ରାର୍ଥୀ ନୁହେଁ ଏଇକ୍ଷଣି । ମୁଁ ମୋ କଥା ବୁଝିବି । ବୁଢ଼ା ବାପ ବେଶ୍ ବୁଝିପାରିବ ତା' ନିଜ କଥା । ଧନ୍ୟବାଦ...

ବୁଢ଼ା ବାପା ଓ କବିଙ୍କର ଜିଦିଖୋରି କେମିତି କୋହଳ ହୋଇଗଲା, ଏବଂ ସେ ଆଜି 'ପ୍ରଦୋଷବିଳାସ'ର ଜଣେ ପୁରୁଣା ଏବଂ ବିଗ୍ରହତୁଲ୍ୟ ଅନ୍ତେବାସୀ ଭାବରେ ଗୃହୀତ ହୋଇପାରିଛନ୍ତି ସେଥିପାଇଁ ଦୁଇଜଣଙ୍କୁ ବିଶେଷ ଭାବରେ ଧନ୍ୟବାଦ ଦେବା କଥା । ପ୍ରଥମତଃ ତାଙ୍କ ଜର୍ଣ୍ଣାଲିଷ୍ଟ୍ ପୁଅ ତରୁଣ । ସେ ବର୍ତ୍ତମାନ କ୍ୟାପିଟାଲ୍‌ରେ ଅଛି । ଜଣେ ସାମ୍ବାଦିକ ହିସାବରେ ତା'ର ରୋଜଗାର ଯଥେଷ୍ଟ ବୋଲି କୁହାଯିବ ନାହିଁ । କିନ୍ତୁ ସେ ତା' ଜେଜେଙ୍କ ଠାରୁ ଗୋଟାଏ ବିଶିଷ୍ଟ ଗୁଣ ପାଇଛି ବୋଲି ମନେହେବ, ଯାହା ତାକୁ ବହୁତ ସାହାଯ୍ୟ କରିଛି, ତା'ର ବୃତ୍ତି ବ୍ୟବସାୟରେ । ତାହା ହେଉଛି ଲୋକସମ୍ପର୍କ । ସେ ଦୁନିଆ ଲୋକଙ୍କୁ ଜାଣେ ଏବଂ ତାଙ୍କ ଭିତରୁ ବେଶ୍ କେତେଜଣ ବଛା ବଛା ଲୋକଙ୍କୁ ସେ 'ବନ୍ଧୁ' ବୋଲି କହିବାର ଅଧିକାର ହାସଲ କରିପାରିଛି । 'ପ୍ରଦୋଷ ବିଳାସ'ର କର୍ତ୍ତା ସୁନୀଲ୍ ମହାନ୍ତି ଓରଫ୍ ସୁନୀଲ୍‌ଭାଇ ତନ୍ମଧ୍ୟରୁ ଜଣେ । ''ଆମ ବାପାଙ୍କୁ ତମ ହୋଟେଲ୍‌ରେ ଥାନ ଦେଇ ପାରନ୍ତ ନାହିଁ ସୁନୀଲ୍‌ଭାଇ ?'' ତରୁଣ ମିନତି କଲା ତାଙ୍କୁ । ''ତା'ହେଲେ ମୁଁ ନିଶ୍ଚୟ ତାଙ୍କୁ ବୁଝେଇ ଦେଇ ପାରନ୍ତି ଯେ ସେଠି ଏକୁଟିଆରେ ପଡ଼ି ରହିବାଠାରୁ, ଏଠି ଏକୁଟିଆରେ ସୁଖ କରିବା ଶ୍ରେୟସ୍କର । ଏବଂ ଆମର ଗୋଟାଏ ଚିନ୍ତା ଯାଆନ୍ତା !'' କିନ୍ତୁ ବନ୍ଧୁ ସୁନୀଲ୍‌ଭାଇ ହସି ହସି 'ହଉ' ବୋଲି କହିଲେ ମଧ୍ୟ ବ୍ୟବସାୟୀ ସୁନୀଲ ମହାନ୍ତି 'ପ୍ରଦୋଷ ବିଳାସ'ର ସ୍ପେଶାଲ୍ ରେଟ୍‌କୁ ତିଳେହେଲେ କମେଇ ଦେଇ ପାରିବେ ନାହିଁ ବୋଲି ଦୁଃଖ କଲେ । କିନ୍ତୁ ତରୁଣ ହାରିଗଲା ନାହିଁ । ସେ ତା'ର ଦୁଃଖ ଜଣାଇଲା, ତା' ସଂସାରର ପରିଧି ଭିତରେ ଥିବା ଏକାଧିକ ଭି.ଆଇ.ପି. ଅଙ୍କଲ୍‌ମାନଙ୍କୁ । ଯେ ତା'ର ବାପା ତଥା ରାଜ୍ୟ ଓ ଦେଶର ଜଣେ ବିଶିଷ୍ଟ କବି ଏଭଳି ଦୁର୍ଦ୍ଦଶାରେ ପଡ଼ିଛନ୍ତି ଆଜି, ହେଲେ ସେ ତାଙ୍କୁ ଉଦ୍ଧାର କରିପାରୁ ନାହିଁ, ଯଥୋଚିତ ଅର୍ଥ ଅଭାବରୁ । ସେଥିରେ ମଧ୍ୟ କିଛି ଲାଭ ହେଲା ନାହିଁ । କିନ୍ତୁ ଦିନେ ହଠାତ୍ ଜଣେ ଭି.ଆଇ.ପି. 'ଆଣ୍ଟି' କବିଙ୍କର ଜଣେ ଫ୍ୟାନ୍ ବୋଲି ନିଜର ପରିଚୟ ଦେଲେ, ଏବଂ କହିଲେ, ଯେ ସେ କିଛି ସାହାଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି । ''ତମେ ପୁଅଝିଅ ଯାହା ଦେଉଛ ଦିଅ, ବାକିତକ ମୁଁ ଦେବି । କିନ୍ତୁ ଗୋଟିଏ ସର୍ତ୍ତରେ । କବି କିମ୍ବା ଆଉ କେହିହେଲେ ଯେମିତି ନ ଜାଣନ୍ତି ଏକଥା । ହେଲା ?'' ତାଙ୍କର ଏଇ ଅଯାଚିତ ସାହାଯ୍ୟ ମିଳି ନ ଥିଲେ ଜଗତ୍‌କୃଷ୍ଣ 'ପ୍ରଦୋଷବିଳାସ' ପରି ଏକ ଉଚ୍ଚସ୍ତରୀୟ ନିବାସର ଅନ୍ତେବାସୀ ହୋଇପାରି ନ ଥାଆନ୍ତେ ।

ଯାହାହେଉ ତରୁଣ ତଥା ପରିବାର ସମସ୍ତ ଗୋଟିଏ ଶାନ୍ତିର ନିଃଶ୍ୱାସ ପକାଇଲେ, ଯେତେବେଳେ ଜଗଦ୍‌କୃଷ୍ଣ ରାଜି ହେଲେ 'ପ୍ରଦୋଷ ବିଳାସ'ରେ ଆସି ରହିବାପାଇଁ । ଏବଂ ସେଠି ପହୁଞ୍ଚିଲେ, ଡଃ ସେନ୍‌ଙ୍କ ଆସିବାର ଅଳ୍ପ କିଛି ଦିନ ପରେ ଏବଂ ଦେଖିଲେ ଯେ ତାଙ୍କୁ ଭଲ ଲାଗୁଛି ଏଇ ଜାଗାଟି । ଖାଇବା ପିଇବା ଆଦି ଦୈନନ୍ଦିନ କ୍ରିୟାକର୍ମ ବିଷୟରେ କିଛି ହେଲେ ଭାବିବାକୁ ପଡୁ ନାହିଁ । ହେଲେ ସୌଖୀନ ପରିବେଶ । କେଉଁଥିରେ କିଛି ଖୁଣିବାକୁ ନାହିଁ । ଏବଂ ଅପର୍ଯ୍ୟାପ୍ତ ସମୟ ତାଙ୍କ ହାତରେ ତାଙ୍କ 'ନିଜକାମ' କରିବାପାଇଁ । ପ୍ରଥମତଃ କବିତା ଲେଖିବା । ଅର୍ଥାତ୍ କାଗଜକଲମ ଧରି କବିତାଧର୍ମୀ କିଛି ହେଲେ ଲେଖିବା । ଯଦିଓ ସେ ଆଜିକାଲି ପ୍ରାୟ ସନ୍ତୁଷ୍ଟ ହୋଇପାରୁ ନାହାନ୍ତି ତାଙ୍କ ଲେଖା ଉପରେ ଏବଂ କ୍ୱଚିତ୍ ଚାହାଁନ୍ତି ତାକୁ ଛପେଇବାପାଇଁ । ତା'ପରେ, କବିତା ଲେଖାର ଫାଙ୍କରେ ତାଙ୍କ ପତ୍ନୀଙ୍କୁ ଝୁରିବା । ଅତୀତର ଅନେକ ସତ ତଥା କଳ୍ପନାଗତ ସ୍ମୃତିକୁ ଆବାହନ କରି ତାଙ୍କ ପତ୍ନୀଙ୍କୁ ହେଜିବା । ଯେଉଁଥିରେ ସର ବାରମ୍ବାର ତାଙ୍କୁ 'ମୋ କବିଟିଏ !' ବୋଲି କହିଲା ପରି ମନେହୁଏ ।

ତରୁଣ ତା'ର ସର୍ତ୍ତ ଅକ୍ଷରେ ଅକ୍ଷରେ ପାଳନ କରିଛି । ବାପାଙ୍କୁ କହିଛି ଯେ ଆମେ ପୁଅଝିଅ ତମର ବିଲ୍ ଚୁକେଇବୁ, ପ୍ରତ୍ୟେକ ମାସ । ତମର ସେ ବିଷୟରେ କିଛି ଭାବିବା ଦରକାର ନାହିଁ । ଏବଂ କାହାକୁ ହେଲେ କହି ନାହିଁ ଯେ 'ପ୍ରଦୋଷ ବିଳାସ'ର ନ୍ୟୂନତମ ଦେୟ ମଧ୍ୟ ପରିବାର ଦେଇପାରି ନ ଥା'ନ୍ତା । ହେଲେ ସେଇ ଅଭାବ ପୂରଣ କରିଛନ୍ତି ବାପାଙ୍କର ଜଣେ ସେବେଳର ଫ୍ୟାନ୍ । ଜଣେ ଭି.ଆଇ.ପି. 'ଆଣ୍ଟି ।' ତାଙ୍କ ନାଆଁ ମଞ୍ଜୁ ମହାପାତ୍ର ।

ସୁପ୍ରସିଦ୍ଧ, ହେଲେ ଅଧୁନା ଅବହେଳିତ କବି ଜଗଦ୍‌କୃଷ୍ଣ ପଣ୍ଡା କେତେ ଯେ ଖୁସି ହୋଇଥାଆନ୍ତେ, ନିଜକୁ ଗୋପନ ରଖିଥିବା ଏଇ ଦାତାଙ୍କ ଉପକାର ବିଷୟରେ ଅବଗତ ହୋଇଥିଲେ, ତା' କହିବା ନିଷ୍ପ୍ରୟୋଜନ । କିନ୍ତୁ ତାଙ୍କୁ ସେଇ ସୁଯୋଗ ମିଳିଲା ନାହିଁ । ତେବେ ସେ କମ୍ ଖୁସି ହୋଇ ଉଠି ନ ଥିଲେ କିଛି ଦିନ ତଳେ, ଗୋଟାଏ ଫୋନ୍‌କଲ୍ ପାଇଲାରୁ । ଜଣେ କିଏ, ସ୍ତ୍ରୀଲୋକଟିଏ, ଚାହୁଁଛି ତାଙ୍କ ସାଙ୍ଗରେ ଦେଖା କରିବା ଲାଗି । କହୁଛି, "ମୁଁ ଆପଣଙ୍କ କବିତା ଶୁଣିବାକୁ ଚାହେଁ, ଆପଣଙ୍କ ମୁହଁରୁ । ଅବଶ୍ୟ ଆପଣଙ୍କର ଯଦି କିଛି ଆପତ୍ତି ନ ଥାଏ । ଆସିବି କି ସାର୍ ? ଆସିବି କି, ଧରନ୍ତୁ, ଆସନ୍ତା ଗୁରୁବାର ଦିନ ଏଇ ଏଗାରଟା ବାରଟା ବେଳକୁ ?" ଜଗଦ୍‌କୃଷ୍ଣ ଅବିଳମ୍ବେ 'ହଉ' ବୋଲି କହିଲେ । ଖୁସିଟାଏ ହୋଇ । ଭାବିଲେ - କେତେଜଣ ପାଠକ, ସମୀକ୍ଷକ, କି ଫ୍ୟାନ୍ ଆସିଛନ୍ତି ମୋ ପାଖକୁ ଗତ ଦଶବର୍ଷ ଭିତରେ, ମୋ ସାଙ୍ଗରେ କିଛି ଆଳାପ ଆଲୋଚନା କରିବା ଲାଗି । ହଁ, ଅନେକ ନମସ୍କାର, ଏବଂ ଅଧିକରୁ ଅଧିକ ନଇଁଲା ନମସ୍କାର, ମିଳୁଛି ମୋତେ ଆଜିକାଲି । ଏଠିକି ଆସଲା ଦିନୁ ତ ଧରାବନ୍ଧା ଓ ନିତ୍ୟପ୍ରତ୍ୟହ, ଅନ୍ୟ ଅନ୍ତେବାସୀମାନଙ୍କ

ଠାରୁ । କିନ୍ତୁ ସେତିକି ମାତ୍ର । ଆଉ କିଛିର ପ୍ରଶ୍ନ ଉଠୁ ନାହିଁ । ଯାହାହେଉ ଏତେଦିନ ପରେ ଜଣେ ଲୋଡ଼ୁଛି ମୋତେ । କହୁଛି କ'ଣ ନା କବିତାଟିଏ ଶୁଣିବ ମୋ ମୁହଁରୁ ! ଧନ୍ୟବାଦ, ଧନ୍ୟବାଦ...

କିନ୍ତୁ ଦୁର୍ଭାଗ୍ୟ ଯେ ସେ ଆପଏଣ୍ଟମେଣ୍ଟର ଠିକଣା ତାରିଖ ଓ ସମୟ ଭୁଲିଗଲେ । ଏବଂ ସେଇ ସମୟରେ ସେ ପତ୍ନୀଙ୍କୁ ଝୁରିବା ଅବସ୍ଥାରେ ଥିଲେ । ସେଇଠୁଁ ମଞ୍ଜୁଙ୍କର ଆବିର୍ଭାବ । ତାଙ୍କର ବି ଟିକିଏ ଡେରି ହୋଇଯାଇଥିଲା, ଏବଂ ସେ କ୍ଷମା ମାଗି ପ୍ରବେଶ କରିଥିଲେ ରୁମ୍ ଭିତରେ । ଅନ୍ୟମନସ୍କ କବି ତାଙ୍କୁ ଇସାରା କଲେ ପାଖରେ ଆସି ବସିବାପାଇଁ । ଏବଂ ସହସା ଦେଖିବାକୁ ପାଇଲେ ପାର୍ଶ୍ୱସ୍ଥିତ ଶ୍ୟାମଳ କୋମଳ ହାତର ପାପୁଲିଟିଏ । ସେଇଠୁଁ ସେଇ ଅପରୂପ ଅସମ୍ଭାବିତ ଦୃଶ୍ୟ, ଯାହା ତିନିଜଣ ଦର୍ଶକଙ୍କ ଜୀବନରେ ଏକ ନୂଆ ଅଙ୍କର ଶୁଭାରମ୍ଭ କରିଥିବ ବୋଲି ଆଶା କରାଯାଏ ।

କିନ୍ତୁ ଏଇ ଦୁଇଜଣଙ୍କର କ'ଣ ହେଲା ? ପାପୁଲିରୁ କହୁଣିଯାଏଁ ସେଇ ଏକାନ୍ତ ଅପ୍ରତ୍ୟାଶିତ ହାତ ଆଉଁଶା, ହେଲା ଏବେ ଅଳ୍ପ କେତୋଟି ମୁହୂର୍ତ୍ତ ପାଇଁ, ତା'ର କ'ଣ କିଛିହେଲେ ପ୍ରଭାବ ପଡ଼ିଲା ନାହିଁ ଦି'ଜଣଙ୍କ ଜୀବନ ଉପରେ ?

ଶୁଣନ୍ତୁ କ'ଣ ହେଲା । ଜଗତକୃଷ୍ଣ ସଚେତନ ହୋଇ ଉଠିଲେ । ବୁଝିଲେ ଯେ ଇଏ ସର ନୁହେଁ, ଅଶରୀରୀ ନୁହେଁ, ଆଉ ଜଣେ ମଣିଷ । ଏବଂ ସ୍ତ୍ରୀମୂର୍ତ୍ତି । ... ଆରେ, ଇଏ ସେଇ ନୁହେଁ ତ, ଯେ ମୋ ସାଙ୍ଗରେ ଦେଖା କରି ମୋ କବିତା ଶୁଣିବାକୁ ଚାହୁଁଥିଲା ? ହଁ, ସେଇ ହୋଇଥିବ ପରା... । ସେଇଠୁଁ ସେ ତାଙ୍କ ହାତ ଘୁଞ୍ଚେଇ ଆଣିଲେ । ଚଟ୍‌କିନି ।

ଜଗତ୍‌କୃଷ୍ଣ ଖୁସି ହୋଇ ଉଠିଲେ ଯେ ସେ ସତରେ ଆସିଛି ତାଙ୍କ ପାଖକୁ ତାଙ୍କ କବିତା ଶୁଣିବ ବୋଲି । କିନ୍ତୁ ପରେ ପରେ ସେ ଲଜ୍ଜିତ ହେଲେ । ଯେ ସେ ଏତେ ବଡ଼ ଭୁଲ୍ କାମଟାଏ କରି ବସିଲେ । ଛିଃ ! ସ୍ତ୍ରୀଲୋକଟି କ'ଣ ଭାବିଥିବ ! ସେଇଠୁଁ ତାଙ୍କ ପାଟିରୁ ବାହାରିଲା ଖଣ୍ଡି ଖଣ୍ଡି ଶବ୍ଦର କ୍ଷମାଭିକ୍ଷା -

''ପ୍ଲିଜ୍ ଏକ୍ସ୍‌କିଉଜ୍ ମି । ମୋର ଗୋଟାଏ ଭୁଲ୍ ହୋଇଗଲା । କିଛି ମନେ କରିବ ନାହିଁ । ଆଇ ମିନ୍, ମୁଁ ଟିକିଏ ଅନ୍ୟମନସ୍କ ହୋଇ ପଡ଼ିଥିଲି । ଭାବୁଥିଲି...''

କିନ୍ତୁ ସେ ଦେଖିଲେ ଆରଜଣ, ତାଙ୍କଠାରୁ ସାନ ହେଲେ ବି ବୟସ୍କା ସ୍ତ୍ରୀଲୋକଟିଏ, ତା' ମୁହଁ ଝଟକି ଉଠିଛି, କୋଉ ନିଧି ମିଳିଗଲା ପରି । ଏବଂ ଶୁଣିଲେ ସେ ନିଜେ କ୍ଷମା ମାଗୁଛି । କହୁଛି -''ସାର୍ ! ପ୍ଲିଜ୍ ସେମିତି କୁହନ୍ତୁ ନାହିଁ କିଛି, ମୋତେ ଲଜ୍ଜା ଦିଅନ୍ତୁ ନାହିଁ ।''

ଏବଂ ସେଇଠୁଁ ସେ ଯାହା କହୁଥିଲେ ମନେ ମନେ ତା'ର ପରିଭାଷା ହେଉଛି - ମୋତେ ଯେଉଁ ଆନନ୍ଦ, ଯେଉଁ ସାର୍ଥକତା ମିଳିଛି ସେଇ ଅନୁଭବକୁ, ତା' ମୁଁ କେମିତି ବୁଝେଇବି ଆପଣଙ୍କୁ ?

ଜଗଦ୍‌କୃଷ୍ଣଙ୍କର ଅପ୍ରତିଭ ଅଧୋମୁଖୀ ଚାହାଣି ଏବଂ ମଞ୍ଜୁଙ୍କର ସତୃପ୍ତ ସମ୍ମୁଖ ଚାହାଣି ଆଉ କେତେ ସମୟ ଯାଏଁ ଏମିତି ନିଷ୍କ୍ରିୟ ହୋଇ ରହିଥାଆନ୍ତା 'ନ ଯଯୌ ନ ତସ୍ଥୌ' ଅବସ୍ଥାରେ ? ନୀରବତା ପ୍ରଥମେ ଭଙ୍ଗ କଲେ ମଞ୍ଜୁ, ସାହସର ସହିତ, ଏବଂ ପଚାରିଲେ -

''ସାର୍‌, ଉପଭୋଗ ଏବଂ ଅନୁଭବ ମଧ୍ୟରେ କ'ଣ ପ୍ରକୃତରେ କିଛି ଗୁଣାତ୍ମକ ପାର୍ଥକ୍ୟ ରହିଛି ? ଅନୁଭବ ଯେମିତି ମାଣ୍ଡେଇ ଗଲେ ଉପଭୋଗ ହୋଇଯାଏ ଯାହାକୁ ସ୍ଥୂଳ ବୋଲି କହିବ, ଉପଭୋଗ କ'ଣ ସେମିତି ଉର୍ଦ୍ଧ୍ୱମୁଖୀ ହୋଇ ପାରିବ ନାହିଁ ? ଧୂପଧୂଆଁ ପରି ଛୁଇଁ ପାରିବ ନାହିଁ କେଉଁ ସ୍ୱର୍ଗକୁ ତା'ର ଶେଷକଥା କହିଲା ପରି ?''

''ଏଁ ?''

ମନେହେଲା କବି ମୋଟେ ବୁଝି ପାରୁ ନାହାନ୍ତି ଆଗନ୍ତୁକର ଭାଷା । ସତେକି ଏଭଳି ଏକ ତାତ୍ତ୍ୱିକ ସାହିତ୍ୟିକ ପ୍ରଶ୍ନ ତାଙ୍କ ବୁଝିବାର ବାହାରେ !

ମଞ୍ଜୁ ହସିଲେ । କହିଲେ, ''ସାର୍‌ କ'ଣ ଭୁଲିଗଲେଣି ଯେ ଆପଣ ନିଜେ ଏଇ ପ୍ରଶ୍ନ ଉଠେଇଥିଲେ ଆପଣଙ୍କ କବିତାରେ ? ମନେ ନାହିଁ ସେଇ ଶିଶିର ଆଉ ସରୀସୃପ କଥା, ଯେଉଁମାନେ କେଉଁ ସବୁଜ ସାଙ୍ଗରେ ଲାଗିଥିଲେ ଏମିତି ?''

ହଁ ! ହଁ ! କବିଙ୍କର ମନେପଡ଼ିଲା ଏଥର । ଏବଂ ସେ ସିଧାସଳଖ ଅନେଇଲେ ଏଥର, ଆଗନ୍ତୁକଙ୍କ ଆଡ଼କୁ, ତାଙ୍କୁ ଅନ୍ତରତମ ଧନ୍ୟବାଦ ଦେଲାପରି । କିନ୍ତୁ ତହୁଁ ଉତ୍ତର ଦେବାର ଦାୟିତ୍ୱ ଭୁଲିଯାଇ ସେ କହିଲେ ନିଜକୁ ଓ ଦୁନିଆକୁ - କିଓ, କବି ଜଗଦ୍‌କୃଷ୍ଣ ପଣ୍ଡା କ'ଣ ଲେଖି ନ ଥିଲା ସେମିତିକା କବିତା ଯାହାକୁ ଇଣ୍ଟେଲେକ୍‌ଚୁ୍ୟାଲ୍‌ ବୋଲି ଅବଶ୍ୟ କହିବ ତମେ ଆଧୁନିକ ମାନେ ? ଇଏ ବି କ'ଣ ଗୋଟାଏ ବିରାଟ ତାତ୍ତ୍ୱିକ ପ୍ରଶ୍ନ ନୁହେଁ, ଯାହା ଛୁଇଁଛି ମୋର ଏଇ ଭାବକାତର ପାଠିକାର ମନୋବୁଦ୍ଧିକୁ ?

ଜଗଦ୍‌କୃଷ୍ଣ ନିରୁତ୍ତର ହେଲେ ମଧ୍ୟ ଏଭଳି ହର୍ଷୋତଫୁଲ୍ଲ ଦେଖାଗଲେ ଯେ ମଞ୍ଜୁଙ୍କର ମନେହେଲା ଯେ ତାଙ୍କୁ ଉତ୍ତର ମିଳି ଯାଇଛି । କବି 'ହଁ' ଭରିଛନ୍ତି ତାଙ୍କ କଥାରେ । ଯେ ତମେ ଯାହା କହୁଛ, ତା' ପୂରାପୂରି ସତ ।

... ଏକ ସୁଖୀ ଏବଂ ସମୃଦ୍ଧ ଦାମ୍ପତ୍ୟ ଜୀବନ ବିତାଇଛ ତମେ, ଶିଳ୍ପପତି ତଥା କଳାପ୍ରେମୀ ପିଣ୍ଟୁ ମହାପାତ୍ରଙ୍କ ସାଙ୍ଗରେ । କେଉଁଥିରେ କିଛି ଅଭାବ ନ ଥିଲା ତମର । ତେଣୁ ତାକୁ ଯଥାର୍ଥରେ ଯୁଗ୍ମ ଉପଭୋଗ ବୋଲି କୁହାଯିବ । ହେଲେ ତାହା ଯଥେଷ୍ଟ ନ ଥିଲା ତମର ଉତ୍ତରଣମୁଖୀ ମନ ପାଇଁ । ତେଣୁ ତମେ ସ୍ୱପ୍ନରେ ଲୋଡ଼ିଲ କେଉଁ ସନ୍ନ୍ୟାସୀକୁ । ଏବଂ ଚେତନ ମନରେ ଲୋଡ଼ିଲ ଗୋଟିଏ କବିକୁ, ଯେ ଏଇ ସଂସାରରେ ଥାଇ ମଧ୍ୟ ନ ଥାଏ ଓ ଯାହାର କବିତା ଛୁଇଁଲା ତମ ମନକୁ । ତମେ ଚାହିଁଲ ତା'ର

ନିକଟକୁ ଆସିବାପାଇଁ । ଅନେକ ଅନେକ ଦିନୁ ଚାହିଁଛ । ପିଣ୍ଟୁବାବୁଙ୍କ ପ୍ରବର୍ତ୍ତାଇଲ ପୁରସ୍କାରଟିଏ ଦେବାପାଇଁ ତାଙ୍କୁ । ଏବଂ ସୁଯୋଗ ପାଇଲାରୁ ସାହାଯ୍ୟ କଲ ତାଙ୍କୁ, ପ୍ରଦୋଷବିଳାସରେ ରହିବା ଲାଗି । ତମେ ତମ ସ୍ୱାମୀଙ୍କୁ ବି କହିଛ ସେ ବିଷୟରେ । ସେ ତମର ଏଇ କାବ୍ୟିକ-କୋମଳ ହୃଦୟକୁ ବୁଝନ୍ତି, ଏବଂ ତା'ର ଏଇ ନିର୍ଦ୍ଦୋଷ କାମନାବାସନାକୁ ପ୍ରଶ୍ରୟ ଦେବାରେ କୌଣସି ଅସୁବିଧା ହୋଇ ନାହିଁ ତାଙ୍କର । ସ୍ୱାମୀ ଚାଲି ଯାଇଛନ୍ତି ଏଇ କେତେ ମାସ ହେଲା । ଏବଂ ତାଙ୍କ ସ୍ମୃତି, ତଥା ତମ ଯୁଗ୍ମ ଉପଭୋଗର ସ୍ମୃତି ଅମଳିନ ଅଛି ତମପାଇଁ । ତଥାପି ତମର ଇଚ୍ଛାପୂରଣ ହୋଇ ନ ଥିଲା ଆଜିଯାଏ ଏଇ କବିଙ୍କୁ ନେଇ । ତେଣୁ ତମେ ସାହସର ସହିତ ଫୋନ୍ କଲ ତାଙ୍କୁ, ଏବଂ ଅନୁମତି ଲୋଡ଼ିଲ ତାଙ୍କ ସାଙ୍ଗରେ ଦେଖା କରି ତାଙ୍କର କବିତା ଶୁଣିବାପାଇଁ । ସତରେ ତମେ ଚାହୁଁଥିଲ ସେତିକ, ଏବଂ ସେତିକିରେ ତମେ ସନ୍ତୁଷ୍ଟ ହୋଇଥାଆନ୍ତ । ସେଇ ହୋଇଥାଆନ୍ତା ତମର ଦୀର୍ଘସୁନ୍ଦର ଦୈହିକ ସାଂସାରିକ ଜୀବନର ଉପଭୋଗକୁ ପାରି ହୋଇ ଲଭିଥିବା ଏକ ମହାନନ୍ଦର ଅନୁଭବ । କ'ଣ ମୁଁ ଭୁଲ୍ କହୁଛି ? ହେଲେ ତମକୁ ମିଳିଗଲା ଆଜି ଏଇ ଅପୂର୍ବ, ଅପ୍ରତ୍ୟାଶିତ ଅନୁଭବ । ଅନେକ ଅଧିକ ଅନ୍ତରଙ୍ଗ କବିତା ଶୁଣିବାଠାରୁ ।

ଏକ ସ୍ୱର୍ଗୀୟ ସ୍ନେହ-ଶ୍ରଦ୍ଧା-ପ୍ରେମ ଏବଂ ଆଶୀର୍ବାଦର ଅନୁଭବ । କବି ଆଉ ଯାହାକୁ ତାଙ୍କ ମନେ ମନେ ଆଉଁଶୁଥାଆନ୍ତୁ ପଛକେ (ହୁଏତ ତାଙ୍କର ପତ୍ନୀ କି କେଉଁ କାବ୍ୟନାୟିକା) ତମେ ବି ସେଠି ଥିଲ, ମଞ୍ଜୁ । ହଁ, ମୁଁ ତମକୁ ବି ଆଉଁଶି ଦେଉଥିଲି ପରା ?...

ଏହି ମର୍ମରେ ମଞ୍ଜୁ ମହାପାତ୍ର ତାଙ୍କ ଈପ୍ସିତ ଉତ୍ତର ହାସଲ କରି ଆଣିଲେ ନିରୁତ୍ତର, ହେଲେ ଝଲି ଉଠିଥିବା ମୁହଁଟିଏ ଦେଖେଇଥିବା କବି ଜଗଦ୍‌କୃଷ୍ଣଙ୍କ ଠାରୁ ।

ସେଇଠୁଁ ସେ ହଠାତ୍ କହି ଉଠିଲେ, ''ସାର୍, ମୁଁ ଯାଉଛି ଆଜି । ଡେରି ହେଲାଣି । ଆପଣମାନଙ୍କ ଲଞ୍ଚର ଘଣ୍ଟା ବାଜିଲାଣି, ଡାଇନିଙ୍ଗ୍ ହଲ୍‌କୁ ଯିବାପାଇଁ । ଆଉ ଦିନେ ଆସିବି ଓ ଶୁଣିବି ଆପଣଙ୍କର କବିତା । ନମସ୍କାର ।''

''ନମସ୍କାର ।''

ପୁଣି ଏକ ନମସ୍କାରର ଆଦାନପ୍ରଦାନ ହେଲା, ଯେତେବେଳେ ଜଗଦ୍‌କୃଷ୍ଣ ତାଙ୍କୁ ଶିଡ଼ି ମୁଣ୍ଡରେ ବଳେଇ ଦେଇ ଆସିଲେ । ଏବଂ ଯେଉଁ ପ୍ରଳମ୍ବିତ ଆନନ୍ଦ ହସରେ ମଣ୍ଡିତ ହୋଇଥିଲା ଦିହିଁଙ୍କ ମୁଖମଣ୍ଡଳ, ଯେଝା ଯେଝା ପ୍ରାପ୍ତିବୋଧକୁ ନେଇ, ତାକୁ ଦିବ୍ୟସୁନ୍ଦର ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

# ନାଟକର ନାଆଁ କଅଣ ?

ମୋ କଥାଟି ସଇଲା । ପାଞ୍ଚୋଟି ମଣିଷଙ୍କ କଥା, ଗୋଟିଏ ବିଚିତ୍ର ଏବଂ ଅସଂଭାବିତ ଦୃଶ୍ୟକୁ ନେଇ । କ'ଣ ଭଲ ଲାଗିଲା ନା ? ମୁଁ ଅନେଇଲି ମୋର ତରୁଣ ଶ୍ରୋତାମାନଙ୍କ ମୁହଁକୁ, ସେଥିରେ ରଙ୍ଗରୂପକୁ କଳିବାପାଇଁ । ଏବଂ ମୋର ମନେହେଲା ଯେ ସେମାନଙ୍କୁ ଭଲ ଲାଗିଛି । ଧନ୍ୟବାଦ ।

ନା, ତଥାପି ମୋ ମନ ମାନିଲା ନାହିଁ । ସନ୍ଦେହ ହେଲା ଯେ ଗପଟି ଭଲ ଲାଗିଛି ହୁଏତ, କିନ୍ତୁ ସେମାନେ ପୂରାପୂରି ସନ୍ତୁଷ୍ଟ ହୋଇପାରୁ ନାହାନ୍ତି । ସତେକି ଅନେକ ପ୍ରଶ୍ନ ବାକି ରହିଗଲା ସେଇ ପାଞ୍ଚଜଣଙ୍କୁ ନେଇ, ତାଙ୍କ ଭବିଷ୍ୟତ ଜୀବନର ପରିପ୍ରେକ୍ଷୀରେ । ଏବଂ ସେଥିର ଉତ୍ତର, ଅନ୍ତତଃ ସେଥିର ଯତ୍‌କିଞ୍ଚିତ୍ ସୂଚନା ନ ମିଳିଲେ ତାଙ୍କ ମନ ଶାନ୍ତ ହେବ ନାହିଁ । ଏକବିଂଶ ଶତାବ୍ଦୀର ଏଇ ତରୁଣ ଶ୍ରୋତାମାନେ ମୋର । ଅନେକ ଆଶା ଓ ପ୍ରତିଶ୍ରୁତିର ବାର୍ତ୍ତାବହ । ମୁଁ ତାଙ୍କୁ ଅଧାବାଟରେ ଛାଡ଼ିଦେବି କେମିତି, ମୋର କେଉଁ କଳାତ୍ମକ ଆଦର୍ଶ କି କାରସାଦିକୁ ବଜାୟ ରଖିବାକୁ ଯାଇ ?

ସେଇଠୁଁ ମୁଁ ଭାବିଲି ଯେ ନିଜକୁ ଯେତେ ବାସ୍ତବବାଦୀ ବୋଲାଇଲେ ମଧ୍ୟ ମୋର ଗୋଟାଏ ଦାୟିତ୍ୱ ଅଛି ଏମାନଙ୍କ ପ୍ରତି । ମଧ୍ୟ ଭାରତୀୟ ପରମ୍ପରା ପ୍ରତି । ମୁଁ କହିଛି, କାହାଣୀର ଆରମ୍ଭରେ, ଯେ ଏଇ ଶେଷ ଅଙ୍କର ପ୍ରଥମ ଦୃଶ୍ୟ ପରେ ସେମାନେ ହୁଏତ ପୁଣି କେତେ ଦୃଶ୍ୟର ଦର୍ଶକ ତଥା ଅନୁଭବୀ ହୋଇ ପାରନ୍ତି । ଏବଂ ଟାଣି ହୋଇଯାଇ ପାରନ୍ତି କେଉଁ କ୍ଲାଇମାକ୍ସ୍ ଅବା ଆଣ୍ଟି-କ୍ଲାଇମାକ୍ସ୍ ଆଡ଼କୁ । ହେଲେ ତାହା କେଉଁ ପ୍ରକାର ହୋଇଥିବ ବୋଲି କିଛି କହିଲି ନାହିଁ । କିନ୍ତୁ ବର୍ତ୍ତମାନ ଯଦି ମୋର ମନ ଡାକୁଛି ଏଇ ଜିଜ୍ଞାସୁ ଏବଂ ଆଶାୟୀ ମୁହଁଗୁଡ଼ିକୁ ଦେଖି, ଯେ ସେମାନଙ୍କୁ କିଛି ଆଶାବାଣୀ ଶୁଣାଇଲେ ହେବ, ମୋର ଉପରୋକ୍ତ ଚରିତ୍ରମାନଙ୍କୁ ନେଇ, ଯେମିତିକି ତାଙ୍କର ତରୁଣ-ପ୍ରବଣ ମୁଖମଣ୍ଡଳ ଉଦ୍‌ଭାସିତ ହୋଇ ଉଠିବ, ସେଥିରେ କ୍ଷତି କ'ଣ ଅଛି ? ଅପରନ୍ତୁ 'ଶେଷକୁ ସମସ୍ତେ ସୁଖରେ ରହିଲେ' ନାମକ ଭାରତୀୟ ପରମ୍ପରାକୁ ଲାଭ ହେବ ନାହିଁ କି ?

ସେହେତୁ ମୁଁ କହିଲି - ''ଶୁଣ । ଏହାପରେ କ'ଣ ହେବ ମୁଁ କହିପାରୁ ନାହିଁ । ତେବେ ମୋର ମନେହୁଏ ଯେ ଏଇଆ ହେବ, ଏବଂ ହେବା ଉଚିତ । ଯଥା -

ଡକ୍ଟର ସେନ୍ ଆଉ କେବେହେଲେ ଓହ୍ଲେଇ ଆସିବେ ନାହିଁ ପୃଥିବୀକୁ, ଏବଂ କେଉଁ ସମ୍ପର୍କମଧୁର ଦୃଶ୍ୟ ଆଉ ତାଙ୍କ ଆଖିରେ ପଡ଼ିବ ନାହିଁ । କିନ୍ତୁ ତା' ଯଦି ସମ୍ଭବ ନ ହୁଏ ତା' ହେଲେ ସେ ଥରେ ହେଲେ କାନ୍ଦନ୍ତୁ, କାନ୍ଦିଲା ପରି । ତା'ହେଲେ ପୁଣି କେଉଁ ଅଭାବବୋଧ, ଆଖିରେ ଜକେଇ ଆସିଥିବା ଲୁହ ତାଙ୍କୁ ହଇରାଣ କରିବ ନାହିଁ ।

ବଳରାମ ବେହେରାଙ୍କୁ ତୁରନ୍ତ ଉତ୍ତର ମିଳିଥିଲା ମନ୍ତ୍ରୀ ସୁଲେଖା ସାହୁଙ୍କଠାରୁ । ଯେଉଁଥିରେ ସେ 'ଡିଅର୍ ସୁଲୁ' ସମ୍ବୋଧନକୁ ସ୍ୱାଗତ ଜଣାଇଥିଲେ । ଲେଖିଥିଲେ, 'ଡିଅର୍ ବଳୀୟାନ୍ ଭାଇ, ଯାହାହେଉ ତମର ସୁଲୁ କଥା ମନେପଡ଼ିଲା' ଇତ୍ୟାଦି । ତେଣୁ ଆଶା କରାଯାଏ ଯେ ଏ ବୟସରେ ପୁଣି କେଉଁ ସମ୍ପର୍କ ଡେଙ୍ଗି ନ ଉଠୁ ପଛେ ତାଙ୍କ ଭିତରେ, ଅମରକୁ ଠିକଣା କାମଟିଏ ମିଳିଯିବ ଯେଉଁଥିରେ ସେ ସବୁମତେ ଲାଭବାନ୍ ହେବ, ଏବଂ ପରୋପକାରୀ ବଳରାମବାବୁଙ୍କୁ ଯଥୋଚିତ ଶାନ୍ତି ମିଳିବ ତାଙ୍କ ଶେଷ ଜୀବନରେ ।

- ଏବଂ ଗଜେନ୍ଦ୍ରବାବୁ ବୁଝିବେ ଯେ 'ପେରେମ' ଜିନିଷଟା ତୁଚ୍ଛ ନୁହେଁ, ତା'ର ମୂଲ୍ୟ ଅଛି । ମଧ୍ୟ ଅଭିମନ୍ୟୁ ଆସିବ, ଆସିବ ଏବଂ ଯଥେଷ୍ଟ ଲକ୍ଷଣ ଦେଖେଇବ ତା' ପିଲାଟି ଦିନୁଁ ଯେ ସେ ଠିକଣା ଜବାବ୍ ଦେବ, କେବେହେଲେ, ପିଣ୍ଟୁ ମହାପାତ୍ର ଜାତୀୟ 'ବ୍ରାହ୍ମଣ'ମାନଙ୍କୁ । ତାହା ଖାନ୍‌ଦାନି ହେଉ କି କଲ୍‌ଚର୍, ଅବା କ୍ୟାରାକ୍ଟର୍ ।

ସେଇଠୁଁ ମୁଁ ଚୁପ୍ ରହିଲି । ଫଳରେ ସ୍ୱାଭାବିକ ପ୍ରଶ୍ନଟିଏ ଆସି ପହୁଞ୍ଚିଲା ମୋ ପାଖରେ, ''ସାର୍, କବି ଜଗଦ୍‌କୃଷ୍ଣ ଓ ତାଙ୍କ ରୋମାଣ୍ଟିକ୍ ଶ୍ରୀରାଧାଙ୍କ ପ୍ରେମଲୀଳା, 'ହେଉ ପଛେ' ତାହା ଅପ୍ରାକୃତ, ତା' କ'ଣ ଆଉ କିଛି ବାଟ ଆଗେଇଯିବ ନାହିଁ, ସେହି ଦୃଶ୍ୟଟିର ପରେ ?''

ଉତ୍ତରରେ ମୁଁ କହିଲି ସହାସ୍ୟ ଦୃଢ଼ତାର ସହ -

''ନା । ମୋ ମତରେ ଥାଉ ସେତିକିରେ । କାରଣ ସେଇ ଭ୍ରମାତ୍ମକ ହାତଆଉଁଶା ପୁଣି କେବେ ଫେରି ଆସିବ ନାହିଁ । ତେଣୁ ଶ୍ରୀରାଧାଙ୍କ ପୁଣି କେଉଁ କାମନା ବାସନାକୁ ପ୍ରଶ୍ରୟ ଦେବା ଉଚିତ ନୁହେଁ । ବରଂ ଥାଉ ସେଇ ଅନବଦ୍ୟ ଅନୁଭବଟିକ ତାଙ୍କ ସ୍ମୃତିପଟରେ ସାଇତା ହୋଇ । ଏକ କ୍ଷଣିକ, ହେଲେ ସ୍ୱର୍ଗୀୟ ଶିଶିରବିନ୍ଦୁର ସ୍ପର୍ଶଟିଏ ପରି ଏବଂ କହିବା ବାହୁଲ୍ୟ, ଜଗଦ୍‌କୃଷ୍ଣଙ୍କୁ ଅବିଳମ୍ବେ ବୁଝିବାକୁ ପଡ଼ିବଯେ ତାଙ୍କର କବିତା ଯଥାର୍ଥରେ ଆଧୁନିକ ନୁହେଁ କି କଦାପି ହୋଇ ପାରିବ ନାହିଁ । ତେଣୁ ଯେଉଁ ଆତ୍ମାନନ୍ଦ ଆସିଥିଲା ତାଙ୍କ ମନରେ କେଉଁ ଅପହୃତ ଗୌରବ ଫେରି ପାଇଲା ପରି, ତାହା ତିଷ୍ଠି ରହିପାରିବ ନାହିଁ । ହେଉ । ତାଙ୍କ କବିତାରେ ତଥା ଚରିତ୍ରରେ ଥିବା ବିଷାଦବୋଧ, ସେଇ କ'ଣ ସୁନ୍ଦର ନୁହେଁ ? ଏବଂ ତାକୁଇ କ'ଣ ସେ ତାଙ୍କ ଶେଷ ଜୀବନର ପାଥେୟ ଭାବରେ ଧରିରଖି ପାରିବେ ନାହିଁ ?''

ମୋର ମନେହେଲା ଯେ ଶ୍ରୋତା କେତେଜଣ ନିରାଶ ହୋଇ ପଡ଼ିଛନ୍ତି ମୋର ଉପରୋକ୍ତ ଉତ୍ତରରେ । କିନ୍ତୁ ଉପାୟ ନାହିଁ । ସେମାନଙ୍କୁ ଯଥାକ୍ରମେ ବଡ଼ ହେବାକୁ ପଡ଼ିବ, ନାନା ଚରିତ୍ରମାନଙ୍କର ବିବିଧ ବିଚିତ୍ର ସୁଖବୋଧର ଉପାଦାନଗୁଡ଼ିକୁ ଚିହ୍ନିବାପାଇଁ ।

ଯାହାହେଉ 'ଆଜି ଏତିକିରେ ଥାଉ, ଧନ୍ୟବାଦ' ସହ ମୁଁ ବିଦାୟ ନେବାକୁ ଯାଉଥିଲି ମୋ ଶ୍ରୋତାମାନଙ୍କଠାରୁ, ଏଇ ସମୟରେ ଜଣେ ହଠାତ୍ କହି ଉଠିଲା, ଆଉ ଅପେକ୍ଷା କରି ନ ପାରିଲା ପରି -

"ସାର୍, ଆପଣ ତ କଥାଟିଏ ଶୁଣାଇଲେ ଆମକୁ, ପାଞ୍ଚଟି ଚରିତ୍ରଙ୍କ ସୁଖଦୁଃଖକୁ ନେଇ, କିନ୍ତୁ ତା' ନାଆଁ ଦେଲେ 'ଶେଷ ଅଙ୍କ, ପ୍ରଥମ ଦୃଶ୍ୟ'। ସତେକି ଇଏ ଗୋଟାଏ ନାଟକର ଅଂଶବିଶେଷ। ତେଣୁ ପ୍ରଶ୍ନ ଉଠୁଛି - ନାଟକର ନାଆଁ କ'ଣ ?

ମୁଁ ଏଭଳି ଗୋଟାଏ ପ୍ରଶ୍ନ ପାଇଁ ପ୍ରସ୍ତୁତ ନ ଥିଲି। କିନ୍ତୁ ମୁଁ କ'ଣ ଜାଣେ ନାହିଁ କେଉଁ ଦ୍ୱିବିଧ ତତ୍ତ୍ୱ ଏବଂ ତଥ୍ୟ ରହିଛି ମୋ କାହାଣୀରେ, ବାକି ସବୁକିଛି ପଛରେ ପକାଇ ? ତେଣୁ ମୁଁ ତାକୁ ସ୍ୱୀକାର ନ କରି ଯିବି କୁଆଡ଼େ ? ସେହେତୁ ମୁଁ ମାତ୍ର ମୁହୂର୍ତ୍ତେ ଭାବିଲା ପରି ହୋଇ ଅନେଇଲି ତା' ଆଡ଼କୁ, ସ୍ଥିର ଚାହାଣିରେ ଏବଂ କହିଲି-

"ପ୍ରେମ ବନାମ ଦୁର୍ନୀତି।"

"ସାର୍ ?"

"ନାଟକର ନାଆଁ ହେଉଛି 'ପ୍ରେମ ବନାମ ଦୁର୍ନୀତି'। ନାଆଁଟା ମୋତେ ନାଟକୀୟ ନୁହେଁ, ମୁଁ ମାନୁଛି। କିନ୍ତୁ ମୁଁ ନାଚାର। ଏଇ ଦୁଇଜଣ ମୁଖ୍ୟ ନାୟକ ମୋ ନାଟକର, ଏକରୁ ଆନ ବଳୀୟାନ୍।"

ସେଇଠୁଁ ଯେଉଁ ଚିପାଓଠ, ଭ୍ରୂକୁଞ୍ଚନ, ଆଦି କ୍ଳେଶର ଛାପ ଦେଖିଲି ତାଙ୍କ ମୁହଁରେ, 'ନା, ସାର୍, ତା' କେମିତି ହେବ ?' ବୋଲି କହିଲା ପରି, ମୁଁ ତତ୍କ୍ଷଣାତ୍ ଗୋଟାଏ ସ୍ପଷ୍ଟୀକରଣ ବାଢ଼ିଦେଲି, ତାଙ୍କୁ ଆଶ୍ୱସନା ଦେବା ଲାଗି। କହିଲି,

"ଶୁଣ ! ମୁଁ କହୁ ନାହିଁ ଯେ ଦିହିଁଙ୍କ ମର୍ଯ୍ୟାଦା ସମାନ ସମାନ। ବୁଝିରଖ ଯେ ପ୍ରେମ ହେଉଛି ହିରୋ, ଏବଂ ଆରକ ଆଣ୍ଟି-ହିରୋ। ତେଣୁ ଦୁର୍ନୀତି ଯେତେ ବାସ୍ତବ ଓ ବଳଶାଳୀ ହେଉ ପଛେ, ସିଏ ପ୍ରେମକୁ କେବେହେଲେ ବଶ କରିପାରିବ ନାହିଁ। ଅପରନ୍ତୁ ସେ ନିଜେ ପ୍ରେମର ବଶ ହୋଇ ଯାଇପାରେ, ତା' ଅଜାଣତରେ, ଯେତେବେଳେ ତା' ନାଆଁ ଡୁବିଯିବ, ଏବଂ ସେ ଆଉ ଦୁର୍ନୀତି ହୋଇ ରହିବ ନାହିଁ। ହଁ, ପ୍ରେମ ଜିତିବ ହିଁ ଜିତିବ, ସିଏ ଦେହର ହେଉ କି ମନର, ପ୍ରାଣର କି ଆତ୍ମାର। ଲିବିଡ଼ୋର, ଇଗୋର, ଅବା ସୁପର୍-ଇଗୋର। ମଣିଷ ଜାତିର ଏଇ ସଯତ୍ନପୋଷିତ ପରମ୍ପରା କ'ଣ କେବେହେଲେ ତୁଟି ଯାଇପାରେ ? କ'ଣ କହୁଛ ?"

"ଅସମ୍ଭବ।" ଘନ ଘନ ମୁଣ୍ଡ ହଲାଇଲେ ସେମାନେ ଏବଂ ମୁଁ କୃତକୃତ୍ୟ ହେଲି। ଏବଂ ଆଶା କଲି ଯେ ମୁଁ ଯାହା କହିଲି ତା'ର ତାତ୍ପର୍ଯ୍ୟ ସେମାନେ ବୁଝିବେ ପୂରାପୂରି। ଆଜି ନ ହେଲେ କାଲି।

---



''କିଶୋରୀଚରଣଙ୍କ ସପ୍ତମ ଉପନ୍ୟାସ 'ପ୍ରଦୋଷ ବିଳାସ'ର ଖୋଲା ପଡ଼ିଥିବା ୨୦୪ ନମ୍ବର କୋଠରିରେ ରଚିତ ଏକ ବିଚିତ୍ର ଦୃଶ୍ୟ ତଥା ସେଥିର ରଚୟିତା ଓ ଦର୍ଶକମାନଙ୍କ ବିଭିନ୍ନ ସୁନ୍ଦର ଜୀବନଚରିତକୁ ନେଇ ଗୁନ୍ଥା ହୋଇଥିବା ଏକ ଉପଭୋଗ୍ୟ କାହାଣୀ । ଯାହାର ପୃଷ୍ଠଭୂମି ସମକାଳୀନ ସମାଜ । କିନ୍ତୁ ତା'ର ମୁଖ୍ୟ ସ୍ୱର କଅଣ ? ପ୍ରେମ ନା ଦୁର୍ନୀତି ? କଥାକାର ଏହି ପ୍ରଶ୍ନବିଶେଷ ବାଢ଼ି ଦେଇଛନ୍ତି ଆମ ଆଗରେ, କାହାଣୀଟିକୁ ଶୁଣାଇସାରିଲା ପରେ । ତେବେ ଆମେ ଏହି ପ୍ରଶ୍ନକୁ ହୁଏତ ଆଡ଼େଇ ଦେଇପାରିବୁ । ଯେହେତୁ କୁହାଯାଇପାରେ ଯେ ମହା ସଚେତନ, ସଂବେଦନଶୀଳ, ହେଲେ ନିଜକୁ ଭଲପାଇବାକୁ ଚାହୁଁଥିବା ମଣିଷର 'ଦୁଃଖ' ବ୍ରହ୍ମା ମଧ୍ୟ ଦୂର କରିପାରିବେ ନାହିଁ । ସେ ଗୋଟିଏ କବି ହେଉ କି ବ୍ୟୁରୋକ୍ରାଟ୍, କଣ୍ଟ୍ରାକ୍ଟର, ମାଷ୍ଟର, ଘରଣୀ କି ଆଉ ଯାହା । ଏହାହିଁ କାହାଣୀର ସ୍ୱର । ସେଇ ଦୟନୀୟ ମଣିଷ ଦଶାରେ ତଥାକଥିତ ପ୍ରେମ ଥାଉ ଅବା ଦୁର୍ନିବାର ଦୁର୍ନୀତି, ସେଥିରେ ଯାଏ କେତେ ଆସେ କେତେ ? ଯାହାହେଉ ସୁଧୀ ପାଠକେ କଥାଟିକୁ କେବଳ ଉପଭୋଗ କରିବେ ନାହିଁ, ଏହି ପ୍ରକାର ବୁଦ୍ଧିବିଚାରର ମଧ୍ୟ ଆଗ୍ରହୀ ହେବେ ବୋଲି ଆମର ବିଶ୍ୱାସ ।''

---

**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩୦୦୨

**ISBN 81-7411-433-5**